# ଭର୍ତ୍ତୃହରି ଶତକମ୍



ଶ୍ରୀ ଜଗନ୍ନାଥ ମିଶ୍ର

# ଭର୍ତ୍ତୃହରି ଶତକମ୍

(ନୀତି ଶତକମ୍, ଶୃଙ୍ଗାର ଶତକମ୍,
ବୈରାଗ୍ୟ ଶତକମ୍—ଶ୍ଳୋକ ସହିତ)

ଶ୍ରୀ ଜଗନ୍ନାଥ ମିଶ୍ର

# ଭର୍ତ୍ତୃହରି ଶତକମ୍

ଲେଖକ :

**ଶ୍ରୀ ଜଗନ୍ନାଥ ମିଶ୍ର**
ଗାନ୍ଧୀନଗର, ପ୍ରଥମ ଲେନ୍, ବ୍ରହ୍ମପୁର-୧

ପ୍ରକାଶିକା ଓ ସ୍ୱତ୍ୱାଧିକାରିଣୀ :
**ଶ୍ରୀମତୀ ଉଷା ମିଶ୍ର**
ଗାନ୍ଧୀନଗର, ପ୍ରଥମ ଲେନ୍, ବ୍ରହ୍ମପୁର-୧

**ଶ୍ରୀଗୁଣ୍ଡିଚା, ୧୯୯୮**

ମୁଦ୍ରଣ :
**ସନ୍ତୋଷ ପ୍ରିଣ୍ଟର୍ସ**
ବ୍ରହ୍ମପୁର-୧

ମୂଲ୍ୟ : **ପଚାଶ ଟଙ୍କା**

## ସୂଚୀପତ୍ର



ଶ୍ରୀ

# ମୁଖବନ୍ଧ

ଭର୍ତ୍ତୃହରିଙ୍କ ଦ୍ୱାରା ଲିଖିତ ଶୃଙ୍ଗାର ଶତକମ୍, ବୈରାଗ୍ୟ ଶତକମ୍ ଏବଂ ନୀତି ଶତକମ୍‌ରେ ଥିବା ତିନିଶହରୁ ଊର୍ଦ୍ଧ୍ୱ ଶ୍ଳୋକ ଏକ ଅନବଦ୍ୟ କୃତି । ମନୁଷ୍ୟ ଶରୀରର ଗଭୀରତମ ପ୍ରଦେଶରେ ଯେଉଁସବୁ ଭାବ ଉଦ୍ରେକ ହୁଏ ସେ ସବୁ ଅତି ନିଖୁଣ ଭାବରେ ଏବଂ ପ୍ରାଞ୍ଜଳ ଭାବରେ ତିନୋଟିଯାକ 'ଶତକ'ରେ ଉଦ୍‌ଭାସିତ । ପାଠକ ଥରେ ପଢ଼ିବାକୁ ଆରମ୍ଭ କଲେ 'ଶତକ'ଟି ଶେଷ ନ କରୁଣୁ ଛାଡିଦେଇ ପାରିବ ନାହିଁ । ଏ ତ ଗଳ୍ପ ଶାସ୍ତ୍ରର ପ୍ରଶଂସା ।

ତେବେ ଭର୍ତ୍ତୃହରି କିଏ, ସେ କେଉଁ ସମୟର କବି ଏସବୁ ବିଷୟରେ ବିଶେଷ କିଛି ତଥ୍ୟ ମିଳେ ନାହିଁ । କେବଳ ତାଙ୍କ ବିଷୟରେ-ଗୋଟିଏ କିମ୍ବଦନ୍ତୀ ସବୁବେଳେ ଶୁଣାଯାଏ । ତାହା ହେଲା—ଭର୍ତ୍ତୃହରି ଜଣେ ରାଜାଥିଲେ । ସୁଶାସକ, ପଣ୍ଡିତ, ଜ୍ଞାନୀ, ରସିକ ଏବଂ କବି ମଧ୍ୟ । ଦିନେ ରାଜା ରାଜସଭାରେ ବସିଥିବା ବେଳେ ଜଣେ ତେଜସ୍ୱୀ ତାନ୍ତ୍ରିକ ସଭା ମଧ୍ୟରେ ପ୍ରବେଶ କରି ରାଜାଙ୍କୁ କହିଲେ—"ହେ ରାଜା, ମୁଁ ଏହି ଦିବ୍ୟଫଳଟି ଆପଣଙ୍କୁ ଦେଉଛି, ଆପଣ ଗ୍ରହଣ କରନ୍ତୁ । ଏହି ଫଳର ଗୁଣ ହେଲା, ଯେ ଏହାକୁ ଭକ୍ଷଣ କରିବ ତାର ଯଶ, ବୁଦ୍ଧି, ଜ୍ଞାନ, ସ୍ୱାସ୍ଥ୍ୟ ଆୟୁ ସବୁଥିରେ ପ୍ରଚୁର ଉନ୍ନତି ହେବ । ଆପଣ ହିଁ ଏ ଫଳ ପାଇଁ ଯୋଗ୍ୟ । ଅତଏବ ଆପଣ ଗ୍ରହଣ କରନ୍ତୁ ।" ରାଜାଙ୍କୁ ଫଳଟି ପ୍ରଦାନ କରି ତାନ୍ତ୍ରିକ ଚାଲିଗଲେ । ଫଳଟି ନେଇ ରାଜା ପ୍ରାସାଦକୁ ଗଲେ ଏବଂ ତାଙ୍କର ଅତିପ୍ରିୟ ଦ୍ୱିତୀୟ ରାଣୀଙ୍କୁ ପ୍ରଦାନ କଲେ । ରାଜା ଭାବିଲେ ଏ ଫଳଟି ଖାଇ ରାଣୀ ବହୁକାଳଯାଏ ଅକ୍ଷୁଣ୍ଣ ଯୌବନା ରହିବେ ଏବଂ ତାହାଙ୍କର ବୁଦ୍ଧିଗୁଣ ଇତ୍ୟାଦିରେ ମୁଗ୍ଧ ରାଜା ଅନେକ ଦିନ ଭୋଗ କରିବେ ।

ଦିନେ ରାଜା ପାରିଧିରୁ ଫେରୁଥିବା ବେଳେ ନଗର ଉପକଣ୍ଠରେ ଜଣେ ଅବଗୁଣ୍ଠନବତୀ ସୁନ୍ଦରୀ ସ୍ତ୍ରୀ ରାଜାଙ୍କର ଅଶ୍ୱ ଅଟକାଇଲା । ରାଜା କାରଣ ପଚାରନ୍ତେ ସ୍ତ୍ରୀ ଜଣକ ଗୋଟିଏ ଫଳ ହାତରେ ଧରି କହିଲା—

"ହେ ରାଜା ଏ ଫଳର ଗୁଣ ଅଭୁତ । ଆପଣ ହିଁ ଏହା ଭକ୍ଷଣ କରିବାକୁ ଉପଯୁକ୍ତ ବ୍ୟକ୍ତି । ଦୟାପୂର୍ବକ ଏହାକୁ ଗ୍ରହଣ କରନ୍ତୁ ।" ରାଜା ପ୍ରଶ୍ନ କରି ଜାଣିପାରିଲେ ଯେ ଯୁବତୀ ଜଣକ ତାଙ୍କ ରାଜ୍ୟର ଜଣେ ପ୍ରସିଦ୍ଧ ବେଶ୍ୟା ।

ଫଳଟି ନେଇ ରାଜା ଉଆସକୁ ଫେରିଲେ । ଫଳଟି ଯେ ତାନ୍ତ୍ରିକ ଦେଇଥିବା ଫଳ ସେଥିରେ ତାଙ୍କର ସନ୍ଦେହ ରହିଲା ନାହିଁ । ଗୁପ୍ତଚର ଦେଇ ରାଜା ବୁଝିଲେ ଯେ ଅତି ସ୍ନେହରେ ସେ ଯେଉଁ ଫଳ ତାଙ୍କର ପ୍ରିୟ ପତ୍ନୀଙ୍କୁ ଦେଇଥିଲେ ସେ ରାଣୀ ରାଜାଙ୍କର ଜଣେ ଅମାତ୍ୟଙ୍କୁ ପ୍ରେମ କରୁଥିଲେ ଏବଂ ଫଳଟି ତାଙ୍କୁ ଦେଇଥିଲେ । ଅମାତ୍ୟ ଜଣେ ତରୁଣୀ ବେଶ୍ୟାକୁ ଭଲ ପାଉଥିବାରୁ ସେ ତାହା ବେଶ୍ୟାକୁ ଦେଇଥିଲେ ।

ଏସବୁ ପ୍ରଜ୍ଞାବାନ ରାଜାଙ୍କ ମନରେ ପ୍ରବଳ ବୈରାଗ୍ୟଭାବ ଜାତ କଲା । ସେ କନିଷ୍ଠ ଭ୍ରାତାଙ୍କୁ ରାଜ୍ୟଭାର ଅର୍ପଣ କରି ବାନପ୍ରସ୍ଥ ଗ୍ରହଣ କଲେ । କିମ୍ବଦନ୍ତୀଟି ଏତିକିରେ ଶେଷ ହେଲା ।

ଲେଖାଗୁଡ଼ିକରୁ ଦେଖାଯାଏ ଯେ ରାଜା ଭର୍ତ୍ତୃହରି ଜଣେ ପ୍ରସିଦ୍ଧ ପଣ୍ଡିତ, କବି, ଦାର୍ଶନିକ ଏବଂ ପ୍ରଜ୍ଞାବାନ ବ୍ୟକ୍ତି ଥିଲେ । ଏଥିରୁ ଅଧିକ ଭର୍ତ୍ତୃହରିଙ୍କ ବିଷୟରେ ତଥ୍ୟ ମିଳେ ନାହିଁ ।

କବି ଭର୍ତ୍ତୃହରି ଏକନିଷ୍ଠ ଓ ପରମ ଶିବ ଉପାସକ ଥିଲେ । ଏହା 'ଶତକ' ଗୁଡିକରେ ବହୁସ୍ଥାନରେ ଦେଖାଯାଏ । ଯଥା—ବୈରାଗ୍ୟଶତକ ଶ୍ଳୋକ ନଂ ୩୦, ୪୦, ୪୧, ୪୬, ୬୦, ୮୫, ୯୦, ୯୧, ୯୩ । ଶେଷୋକ୍ତ ଶ୍ଳୋକଟି ହେଉଛି—

ଜଗଦୀଶ୍ବର ବା ମହେଶ୍ବର ପୁଣି ଜଗଦାତ୍ମା ଜନାର୍ଦ୍ଦନ
ନ ଜାଣଇ ଭେଦ, ତଥାପି ବାଳେନ୍ଦୁ ମଣ୍ଡଳରେ ମୋର ମନ ।

କିନ୍ତୁ ଶତକଗୁଡ଼ିକ ଗଭୀର ଭାବରେ ଅଧ୍ୟୟନ କଲେ ଦେଖାଯାଏ ଯେ ସେଥିରେ ମୁଖ୍ୟତଃ ବୈରାଗ୍ୟ ଶତକରେ ଏପରି କେତେଗୁଡ଼ିଏ ଶ୍ଳୋକ ଅଛି ଯାହା ଜଣେ ବିଳାସଭୋଗୀ ରାଜା ପକ୍ଷେ ଏତେ ଗଭୀର ଭାବରେ ଅନୁଭବ କରିବା ହୁଏତ ସମ୍ଭବପର ନୁହେଁ । (ଯଥା—ଶ୍ଳୋକ ନମ୍ବର ୫, ୬, ୮, ୨୩, ୨୪, ୨୬, ୨୯, ୩୪, ୪୫, ୪୬, ୪୮, ୫୧, ୫୬,

୭୫ ଗୁଡ଼ିକ) । ବୋଧହୁଏ ରାଜା ବାନପ୍ରସ୍ଥ ସମୟରେ ହିଁ ଲେଖିଥିବେ ।
ଶ୍ଳୋକଗୁଡ଼ିକରେ ଯେଉଁ ଭାବ ପ୍ରକାଶ ପାଉଛି ତାହା ସାଧାରଣତଃ ଜଣେ
ତେଜସ୍ୱୀ, ସ୍ୱାଭିମାନୀ, ମହାନ୍ ପଣ୍ଡିତ ଅଥଚ ଅତି ଗରିବ କବିର, ହୃଦୟର
ଉଚ୍ଛ୍ୱାସ । ତେଣୁ ଆଶଙ୍କା ହୁଏ ଯେ କୌଣସି ସମସାମୟିକ ତେଜସ୍ୱୀ, ସ୍ୱାମିନ
ଓ ଅତି ଗରିବ ପଣ୍ଡିତ କବିଙ୍କଦ୍ୱାରା ସେହି ଶ୍ଳୋକଗୁଡ଼ିକ ରଚିତ ହୋଇଥାଇ
ପାରେ ଏବଂ ଆକସ୍ମିକ ଭାବେ ସେଗୁଡ଼ିକ ଶତକ ଭିତରକୁ ଆସିଯାଇ
ଥାଇପାରେ । କିନ୍ତୁ ତା ବୋଲି ଯେ ଭର୍ତ୍ତୃହରିଙ୍କ ପରି ଜଣେ ମହାନ୍ କବି
ସେଗୁଡ଼ିକର ସ୍ରଷ୍ଟା ହୋଇ ନଥିବେ ତାହା ମଧ୍ୟ କୁହାଯାଇ ପାରିବ ନାହିଁ ।
ଏଠାରେ କେବଳ ଏକ କ୍ଷୁଦ୍ର ସୂଚନା ଦିଆଗଲା । ଶ୍ଳୋକଗୁଡ଼ିକ
ଭର୍ତ୍ତୃହରିଙ୍କ ଦ୍ୱାରା ଲିଖିତ କି ଅନ୍ୟଦ୍ୱାରା ଲିଖିତ ତାହା ଉକ୍ତ ଶ୍ଳୋକ-
ଗୁଡ଼ିକର ଭାଷାଗତ ଶୈଳୀର ସାମ୍ୟତା ଓ ଶବ୍ଦ ସଂଯୋଜନା ଶୈଳୀରୁ
କିଛିଟା ପ୍ରମାଣ ମିଳିପାରେ । ତାହା ଜାଣିବା କେବଳ ସଂସ୍କୃତ ଭାଷାରେ
ଗଭୀର ପ୍ରବେଶ ଥିବା ପଣ୍ଡିତମାନଙ୍କ ପକ୍ଷେ ସମ୍ଭବ । ଅନ୍ୟମାନଙ୍କ ପରି
ଆମେ ମଧ୍ୟ ଧରିନେଇଛୁ ଯେ ଶ୍ଳୋକଗୁଡ଼ିକ ଭର୍ତ୍ତୃହରିଙ୍କ ସ୍ୱକୀୟ କଳ୍ପନା-
ପ୍ରସୂତ ହୋଇଥାଇ ପାରେ ।

ଜଗନ୍ନାଥ ମିଶ୍ର

# ଭର୍ତ୍ତୃହରି ଶତକମ୍

## ଶୃଙ୍ଗାର ଶତକମ୍
(ଶ୍ଳୋକ ସହିତ)

ଶ୍ରୀ ଜଗନ୍ନାଥ ମିଶ୍ର

# ଶୃଙ୍ଗାର ଶତକମ୍

ଶମ୍ଭୁସ୍ୱୟଂଭୂହରୟୋ ହରିଣେକ୍ଷଣାନାଂ
ଯେନାକ୍ରିୟନ୍ତ ସତତଂ ଗୃହକର୍ମଦାସାଃ
ବାଚାମଗୋଚରଚରିତ୍ର ବିଚିତ୍ରିତାୟ
ତସ୍ମୈ ନମୋ ଭଗବତେ କୁସୁମାୟୁଧାୟ । ୧ ।

ସ୍ମିତେନ ଭାବେନ ଚ ଲଜ୍ଜୟା ଭିୟା
ପରାଂମୁଖୈରର୍ଦ୍ଧ କଟାକ୍ଷବୀକ୍ଷଣୈଃ
ବଚୋଭିରୀର୍ଷ୍ୟା କଳହେନ ଲୀଳୟା
ସମସ୍ତ ଭାବୈଃ ଖଳୁ ବନ୍ଧନଂ ସ୍ତ୍ରିୟଃ । ୨ ।

ଭ୍ରୂଚାତୁର୍ଯ୍ୟାକୁଞ୍ଚିତାକ୍ଷାଃ କଟାକ୍ଷାଃ
ସ୍ନିଗ୍‌ଧା ବାଚୋ ଲଜ୍ଜିତାନ୍ତାଶ୍ଚ ହାସାଃ
ଲୀଳାମନ୍ଦଂ ଚ ସ୍ଥିତଂ ପ୍ରସ୍ଥିତଂ ଚ
ସ୍ତ୍ରୀଣାମେତ ଭୂଷଣଂ ଚାୟୁଧଂ ଚ । ୩ ।

କ୍ୱଚିତ୍ ସୁଭ୍ରୂଭଂଗୈଃ କ୍ୱଚିଦପି ଚ ଲଜ୍ଜାପରିଣତୈଃ
କ୍ୱଚିଦ୍ ଭୀତିତ୍ରସ୍ତୈଃ କ୍ୱଚିଦପି ଚ ଲୀଳାବିଲସିତୈଃ
ନବୋଢ଼ାନାମେଭିର୍ବଦନ କମଲୈର୍ନେତ୍ରଚଳିତୈଃ
ସ୍ଫୁରନ୍ନୀଳାବ୍‌ଜାନାଂ ପ୍ରକରପରିପୂର୍ଣ୍ଣାଃ ଇବ ଦିଶଃ । ୪ ।

ବକ୍ତ୍ରଂ ଚନ୍ଦ୍ରବିକାଶି ପଙ୍କଜପରୀହାସକ୍ଷମେ ଲୋଚନେ
ବର୍ଣ୍ଣଃ ସ୍ୱର୍ଣ୍ଣମପାକରିଷ୍ଣୁରଳିନୀଜିଷ୍ଣୁଃ କଚାନାଞ୍ଚୟଃ
ବକ୍ଷୋଜାବିଭକୁମ୍ଭବିଭ୍ରମହରୌ ଗୁର୍ବୀ ନିତମ୍ବସ୍ଥଳୀ
ବାଚାଂ ହାରି ଚ ମାର୍ଦ୍ଦବଂ ଯୁବତିଷୁ ସ୍ୱାଭାବିକଂ ମଣ୍ଡନମ୍ । ୫ ।

ସ୍ମିତଂ କିଂଚିଦ୍‌ବକ୍ତ୍ରେ ସରଳତରଳୋ ଦୃଷ୍ଟିବିଭବଃ
ପରିସ୍ପନ୍ଦୋ ବାଚାମଭିନବବିଳାସୋକ୍ତି ସରସଃ
ଗତାନାମାରମ୍ଭଃ କିଶଳୟିତଲୀଳାପରିକରଃ
ସ୍ପୃଶଂତ୍ୟାସ୍ତାରୁଣ୍ୟଂ କିମିବ ନହି ରମ୍ୟଂ ମୃଗଦୃଶଃ । ୬ ।

# ଶୃଙ୍ଗାର ଶତକମ୍

ଯାହା ପ୍ରଭାବରେ ବ୍ରହ୍ମାବିଷ୍ଣୁହର ହରିଣାକ୍ଷି ବାଳାଙ୍କର
ଗୃହକର୍ମଦାସମାନଙ୍କ ସଦୃଶ ଖଟୁଥା'ନ୍ତି ନିରନ୍ତର
ଚରିତ ଯାହାର ବିପୁଳ ବିଚିତ୍ର ବଚନର ଅଗୋଚର
ପୁଷ୍ପାୟୁଧ ସେହି କନ୍ଦର୍ପ ଦେବଙ୍କୁ କରୁଛି ମୁଁ ନମସ୍କାର । ୧ ।

ମୃଦୁମନ୍ଦହାସ, ଲଜ୍ଜାଳଜ ଆସ୍ୟ ମନୋଭାବ ପ୍ରକାଶନ
ଅକସ୍ମାତେ ମୁଖ ଫେରାଇ ପୁଣି ସେ ଅର୍ଦ୍ଧକଟାକ୍ଷ ଲୋଚନ
କୋମଳ ବଚନ, ଅକାରଣ ଈର୍ଷା ଲୀଳାକଳହେ ସନ୍ତୋଷ
ମୃଗାକ୍ଷୀମାନଙ୍କ ଏ ସକଳ ଭାବ ଅମୋଘବନ୍ଧନ ପାଶ । ୨ ।

ସୁଚତୁର ଭ୍ରୂଚାଳନେ କୁଞ୍ଚିତକଟାକ୍ଷେ ଅବଲୋକନ
କୋମଳ ବଚନ ସଲଜ୍ଜବଦନେ ମନ୍ଦ ହାସ ପ୍ରକାଶନ
ଭ୍ରମିବେଳେ ସାବଲୀଳ ଭଙ୍ଗୀ, ପୁଣି ମୃଦୁଳ ମନ୍ଥର ଗତି
କାମିନୀମାନଙ୍କ ଭୂଷଣ ଏ ସବୁ ଅମୋଘ ଆୟୁଧଛନ୍ତି । ୩ ।

କେବେ ଭ୍ରୂଭଙ୍ଗୀରେ କେବେ ଅବା ଲଜ୍ଜା ଅବନତ ମୁଖଠାଣି
କେବେ ସ୍ମିତହାସ୍ୟ ଭାବ କେବେ ଲୀଳା ବିଳାସର ଭଙ୍ଗୀ ପୁଣି
ନବୋଢ଼ା କାମିନୀ ବଦନ କମଳେ ଡୋଳା ଖେଳାଇବା ବେଳେ
ପ୍ରଫୁଲ୍ଲ ସେ ନୀଳକମଳ ଦଳର ପରିପୂର୍ଣ୍ଣ ଶୋଭା ଖେଳେ । ୪ ।

ପରିପୂର୍ଣ୍ଣ ଚନ୍ଦ୍ରବଦନ ନୟନ ସଜସରସିଜ ନିନ୍ଦେ
ବର୍ଣ୍ଣ ସ୍ୱର୍ଣ୍ଣକାନ୍ତିଜିଣି ଗୁରୁକେଶ ପରାଭବେ ଅଳିବୃନ୍ଦେ
କରୀକୁମ୍ଭଦମ୍ଭ ମର୍ଦ୍ଦନ ଉରଜ, ପୃଥୁଳ ନିତମ୍ବ ପୁଣ
ମନୋହର ମୃଦୁବଚନ ଯୁବତୀ ଯୋଷାଙ୍କ ଏହୁ ଭୂଷଣ । ୫ ।

ମୁଖେ ମନ୍ଦହାସ ସରଳତରଳ ଗୃହାଣି ନେତ୍ର ସମ୍ପତ୍ତି
ବିଳାସ ସରସ ବଚନେ ପ୍ରକାଶ ଭାବ ଅଭିନବ ଉକ୍ତି
ଲୀଳାସ୍ଫୁରିତ ନବକିଶଳୟ ମନ୍ଦମନ୍ଦ ଛନ୍ଦେ ପଦେ ଚଳେ
ଯୌବନ ସ୍ପର୍ଶେ ସୁନ୍ଦର ନ ଦିଶେ କି ଅବା ମୃଗ ଦୃଶାରେ । ୬ ।

ଦ୍ରଷ୍ଟବ୍ୟେଷୁ କିମୁତ୍ତମଂ ମୃଗଦୃଶାଂ ପ୍ରେମପ୍ରସନ୍ନଂ ମୁଖଂ
ଘ୍ରାତବ୍ୟେଷ୍ୱପି କିଂ ତଦାସ୍ୟପବନଃ ଶ୍ରାବ୍ୟେଷୁ କିଂ ତଦ୍‌ବଚଃ
କିଂ ସ୍ୱାଦ୍ୟେଷୁ ତଦୋଷ୍ଠପଲ୍ଲବରସଃ ସ୍ପୃଶ୍ୟେଷୁ କିଂ ତତ୍ତନୁ-
ଧ୍ୟେୟଂ କିଂ ନବଯୌବନଂ ସହୃଦୟୈଃ ସର୍ବତ୍ର ତଦ୍‌ବିଭ୍ରମଃ । ୭ ।

ଏତାଃ ସ୍ଖଳଦ୍‌ବଳୟସଂହତି ମେଖଳୋତ୍‌ଥ
ଝଙ୍କାରନୂପୁରରବାହୃତ ରାଜହଂସସ୍ୟ
କୁର୍ବନ୍ତି କସ୍ୟ ନ ମନୋ ବିବଶଂ ତରୁଣ୍ୟୋ
ବିତ୍ରସ୍ତମୁଗ୍‌ଧହରିଣୀସଦୃଶୈଃ କଟାକ୍ଷୈଃ । ୮ ।

କୁଂକୁମପାଙ୍କ କଳଂକିତ ଦେହ ଗୌର ପୟୋଧର କଂପିତହାର
ନୂପୁର ହଂସରଣତ୍ପଦପଦ୍ମ କଂ ନ ବଶୀକୁରୁତେ ଭୁବି ରାମା । ୯ ।

ନୂନଂ ହି ତେ କବିବରା ବିପରୀତ ବୋଧା
ଯେ ନିତ୍ୟମାହୁରବଲା ଇତି କାମିନୀନାମ୍
ଯାଭିର୍ବିଲୋଲତର ତାରକ ଦୃଷ୍ଟି ପାତୈଃ
ଶକ୍ରାଦୟୋଽପି ବିଜିତାସ୍ତ୍ୱବଲାଃ କଥଂ ତାଃ । ୧୦ ।

ନୂନମାଜ୍ଞାକରସ୍ତସ୍ୟାଃ ସୁଭ୍ରୁବୋ ମକରଧ୍ୱଜଃ
ଯତସ୍ତନ୍ନେତ୍ରସଞ୍ଚାରସୂଚିତେଷୁ ପ୍ରବର୍ତ୍ତତେ । ୧୧ ।

କେଶାଃ ସଂଯମିନଃ ଶ୍ରୁତେରପି ପାରଂଗତେ ଲୋଚନେ
ଅନ୍ତର୍ବକ୍ତ୍ରମପି ସ୍ୱଭାବଶୁଚିଭିଃ କୀର୍ଣ୍ଣଂ ଦ୍ୱିଜାନାଂଗଣୈଃ
ମୁକ୍ତାନାଂ ସତତାଧିବାସରୁଚିରଂ ବକ୍ଷୋଜକୁମ୍ଭଦ୍ୱୟ—
ମିତ୍ଥଂ ତନ୍ୱି ବପୁଃ ପ୍ରଶାନ୍ତମପି ତେକ୍ଷୋଭଂ କରୋତ୍ୟେବନଃ ।୧୨।

ମୁଗ୍‌ଧେ ଧାନୁଷ୍କତା କେୟମପୂର୍ବା ତ୍ୱୟି ଦୃଶ୍ୟତେ
ଯଥା ହରସି ଚେତାଂସି ଗୁଣୈରେବ ନ ସାୟକୈଃ । ୧୩ ।

ସତିପ୍ରଦୀପେ ସତ୍ୟଗ୍ନୌ ସତ୍ସୁ ତାରାରବୀନ୍ଦୁଷୁ
ବିନା ମେ ମୃଗଶାବାକ୍ଷ୍ୟା ତମୋଭୂତମିଦଂ ଜଗତ୍ । ୧୪ ।

ମୃଗଦୃଶା ପ୍ରେମପ୍ରସନ୍ନ ବଦନରୁ ବଳି ଦର୍ଶନୀୟ କାହିଁ
ତା ମୁଖ ପବନରୁ ବଳି ଆଘ୍ରାଣୀୟ, ଶ୍ରାବ୍ୟ ତା ବଚନରୁ ନାହିଁ
ଅଧର ପଲ୍ଲବ ରସ ତହୁଁ ସ୍ୱାଦ୍ୟ, ସ୍ପର୍ଶ ତା ତନୁରୁ ବଳି
ଧ୍ୟେୟ ତାର ନବଯୌବନ ବିଳାସ, ହୃଦୟ ପାଇଁ ତାହାର । ୭ ।

ଚଞ୍ଚଳବଳୟ ଧ୍ୱନି ସଂଗେ ମିଶି ମେଖଳା ଝଙ୍କାର ସ୍ୱନ
ରାଜମରାଳର ଗତି ଜିଣି ତାର ନୂପୁରର ରଣଝଣ
ଖିତସସ୍ତ ମୁଗ୍ଧା ମୃଗୁଣୀ ଲୋଚନା କଟାକ୍ଷ ନିକ୍ଷେପ କଲେ
କହ ତ ସେ କେଉଁ ତରୁଣ ମାନସ ବିବଶ ମୋହିବ ଭୁଲେ । ୮ ।

କୁଙ୍କୁମ ପରାଗେ ବିଲେପିତ ତନୁ ପୀନଂଗୌର ପୟୋଧର—
ଉପରେ ଚଞ୍ଚଳ ମୁକୁତାର ହାର ବିଲମ୍ବିତ ମନୋହର
ଚରଣ ପଙ୍କଜେ ତରୁଣୀର ଗୁଞ୍ଜୁ ନୂପୁରର ମୃଦୁସ୍ୱନ
ଏଭୁବନେ କେଉଁ ତରୁଣର ବଳେ ବଶ ନକରିବ ମନ । ୯ ।

କବିବର ବ୍ରଜ ନିଶ୍ଚୟେ ତ ସବୁ ବୁଝନ୍ତି ସେ ବିପରୀତ
କାମିନୀମାନଙ୍କୁ ସବୁବେଳେ ଯାହା ଅବଳା କହନ୍ତି ସେ ତ
ଯାହାର ତରଳ ନେତ୍ର ତାରକାର କଟାକ୍ଷବିଶିଖ ଘାତେ
ସ୍ୱର୍ଗେ ସୁରପତି ପରାଜିତ ତାରେ ଅବଳା କହ କେମନ୍ତେ । ୧୦ ।

ଭ୍ରୁରୁ ବିଳାସିନୀ ଆଜ୍ଞାବହ ଭୃତ୍ୟ ମନୋଜ ସନ୍ଦେହ ନାହିଁ
ନେତ୍ର ସଙ୍କେତନେ ସୂଚୟେ ସେ ଯାରେ, ମଦନ ପ୍ରବର୍ତ୍ତେ ତହିଁ । ୧୧ ।

କେଶ ଅତିସଂଯମିତ, ଶ୍ରୁତିତଟ ଯାଏ ପ୍ରସାରି ଲୋଚନ
ସ୍ୱଭାବେ ଶୁଚି ସେ ମୁଖଗହ୍ୱରତା ଦନ୍ତପନ୍ତି ଦ୍ୱିଜେ ଶୀର୍ଣ୍ଣ
କୁଚକୁମ୍ଭ ବନ ଶୋଭିତ ସତତ ରୁଚିର ମୁକୁତାମାନେ
ତନ୍ୱୀ, ତନୁ ନିତ୍ୟ ପ୍ରଶାନ୍ତ ତଥାପି ମନେ କ୍ଷୋଭ ଜାତ କରେ । ୧୨ ।

ସୁନ୍ଦରୀ ଗୋ ତୋର ଧନୁର୍ବିଦ୍ୟା ଦେଖି ମନ ମୋର ଆଚମ୍ବିତ
ବିନା ସାୟକରେ, କେବଳ ଗୁଣରେ ହରଣ କରୁଛୁ ଚିତ୍ତ । ୧୩ ।

ଥାଉ ସେ ପ୍ରଦୀପ, ଥାଆନ୍ତୁ ତାରକା ଇନ୍ଦୁ ଦିବାକର ସେ ତ
ମୃଗଶାବକଲୋଚନା ବିନା ମୋତେ ତମୋମୟ ଏ ଜଗତ । ୧୪ ।

ଯଦ୍‌ବୃତ୍ତଃ ସ୍ତନଭାର ଏଷ ତରଳେ ନେତ୍ରେ ଚଳେ ଭ୍ରୂଲତେ
ରାଗାନ୍ଧେଷୁ ତଦୋଷ୍ଠପଲ୍ଲବମିଦଂ କୁର୍ବନ୍ତୁନାମ ବ୍ୟଥାମ୍
ସୌଭାଗ୍ୟାକ୍ଷର ପଂକ୍ତିରେବ ଲିଖିତା ପୁଷ୍ପାୟୁଧେନ ସ୍ୱୟଂ
ମଧ୍ୟସ୍ଥାପି କରୋତି ତାପମଧିକଂ ରୋମାବଳୀ କେନ ସା । ୧୫ ।

ଗୁରୁଣା ସ୍ତନଭାରେଣ ମୁଖ ଚନ୍ଦ୍ରେଣ ଭାସ୍ୱତା
ଶନୈଶ୍ଚରାଭ୍ୟାଂ ପାଦାଭ୍ୟାଂରେଜେ ଗ୍ରହମୟୀବ ସା । ୧୬ ।

ତସ୍ୟାଃ ସ୍ତନୌ ଯଦି ଘନୌ ଜଘନଂବିହାରି
ବକ୍ତ୍ରଂ ଚ ଚାରୁତବ ଚିତ୍ତକିମାକୁଳତ୍ୱମ୍
ପୁଣ୍ୟଂ କୁରୁଷ୍ୱ ଯଦି ତେଷୁ ତବାସ୍ତି ବାଞ୍ଛା
ପୁଣ୍ୟୈର୍ବିନା ନ ହି ଭବନ୍ତି ସମୀହିତାର୍ଥାଃ । ୧୭ ।

ମାତ୍ସର୍ଯ୍ୟମୁତ୍ସାର୍ଯ୍ୟ ବିଚାର୍ଯ୍ୟ କାର୍ଯ୍ୟ—
ମାର୍ଯ୍ୟାଃ ସମର୍ଯ୍ୟାଦମିଦଂ ବଦନ୍ତୁ
ସେବ୍ୟା ନିତମ୍ବାଃ କିମୁ ଭୂଧରାଣା—
ମୁତଃ ସ୍ମରସ୍ମେର ବିଳାସିନୀନାମ୍ । ୧୮ ।

ସଂସାରେଽସ୍ମିନ୍ନସାରେ ପରିଣତିତରଳେଦ୍ୱେଗତୀ ପଣ୍ଡିତାନାଂ
ତତ୍ତ୍ୱଜ୍ଞାନାମୃତାମ୍ଭଃ ପ୍ଲୁତଲଲିତଧିୟାଂ ଯାତୁ କାଳଃ କଦାଚିତ୍
ନୋ ଚେନ୍ମୁଗ୍ଧାଙ୍ଗନାନାଂ ସ୍ତନଜଘନଭରା ଭୋଗ ସଂଭୋଗିନୀନାଂ
ସ୍ଥୂଳୋପସ୍ଥସ୍ଥଳୀଷୁ ସ୍ଥଗିତକରତଳସ୍ପର୍ଶଲୀଳୋଦ୍ୟତାନାମ୍ । ୧୯ ।

ମୁଖେନ ଚନ୍ଦ୍ରକାନ୍ତେନ ମହାନୀଳୈଃ ଶିରୋରୁହୈଃ
ପାଣିଭ୍ୟାଂ ପଦ୍ମରାଗାଭ୍ୟାଂ ରେଜେ ରତ୍ନମୟୀବ ସା । ୨୦ ।

ସଂମୋହୟନ୍ତି ମଦୟନ୍ତି ବିଡମ୍ବୟନ୍ତି
ନିର୍ଭର୍ତ୍ସୟନ୍ତି ରମୟନ୍ତି ବିଷାଦୟନ୍ତି
ଏତାଃ ପ୍ରବିଶ୍ୟ ସଦୟଂ ହୃଦୟଂ ନରାଣାଂ
କିଂ ନାମ ବାମନୟନା ନ ସମାଚରନ୍ତି । ୨୧ ।

ବର୍ତ୍ତୁଳ ଉରଜ ତରଳ ନୟନ ଚଂଚଳ ତୋ ଭ୍ରୂଲତା
ଅଧରପଲ୍ଲବ ସୁଗାନ୍ଧ ହୋଇ ସେ ଦେଲେ ସେ ହଅନ୍ତୁ ବ୍ୟଥା
ସୌଭାଗ୍ୟ ଅକ୍ଷରପଂକ୍ତି ତୋ ଭାଲେ ବା ଲେଖିଲି ମଦନ ବୋଲି
ମଧ୍ୟସ୍ଥ ହୋଇ ସେ ସର୍ବାଧିକ ବ୍ୟଥା ହଏ କପାଁ ରୋମାବଳୀ । ୧୫ ।

ସ୍ତନଭାର 'ଗୁରୁ' ବଦନ 'ଚନ୍ଦ୍ରମା' ଅତି ରମଣୀୟ ହସେ
ପଦଯୁଗ ମନ୍ଦଗତି 'ଶନି' ସମ ଗ୍ରହମୟୀ ରମଣୀ ସେ । ୧୬ ।

ତରୁଣୀର ସ୍ତନଭାର ଘନ ଯଦି ଜଘନ ବନ୍ଧାରୋପିତ
ବଦନ ସୁଷମା ଲୋଭନୀୟ, ତବ ଚିତ୍ତ କପାଁ ଉଦ୍‌ବେଳିତ
ବାଞ୍ଛା ଯଦି ତବ ଲଭିବାକୁ ତାରେ, ପୁଣ୍ୟ ତୁ ସଂଚୟ କର
ପୁଣ୍ୟ ବିନା ଭବେ ପୂର୍ଣ୍ଣ ହୋଇନାହିଁ କେବେ ମନୋରଥ କାର । ୧୭ ।

ହେ ବିଜ୍ଞ ମାନବ ମତ୍ସରତା ତେଜ ଧୀରମତି ସ୍ଥିରଚିତ୍ତେ
ସୁବିଚାର କରି କହ କେଉଁ ପଥେ ଯିବା ଉଚିତ ଜଗତେ
ସୁବିପୁଳ ନୀଳ ଭୂଧର ନିତମ୍ବେ ଧ୍ୟାନରତ ହୋଇ ଦିନ
ଯାପିବ, ଅଥବା ସୁନ୍ଦର ବିଳାସିନୀ ନିତମ୍ବେ ନିବେଶି ମନ । ୧୮ ।

ପଣ୍ଡିତଙ୍କ ପାଇଁ ବେନଟନ୍ତା ଏହି ଅସାର ଭଙ୍ଗୁର ଭବେ
ତତ୍ତ୍ୱଜ୍ଞାନାମୃତ ଆପ୍ଳୁତ ମାନସେ ସୁଖେ କାଳକାଟି ଯିବେ
ଅବା ଘନସ୍ତନ ଜଘନ ସଂଭୋଗ ପ୍ରଦାୟିନୀ ଅଙ୍ଗନାର
ସ୍ଥୂଳ ତନୁ ପରେ ହସ୍ତ ସଂଚାଳନ ଲୀଳାରେ ଯିବ ବାସର । ୧୯ ।

ମୁଖ ତାର ଚନ୍ଦ୍ରକାନ୍ତ ମଣି, କେଶ ମହାନୀଳମଣି ଆଭା
କରତଳ ପଦ୍ମରାଗମଣି ଦ୍ୟୁତି, ରତ୍ନମୟୀ ନାରୀ ଶୋଭା । ୨୦ ।

ମୋହକରେ ମନ, ଭରେ ଉନ୍ମାଦତା, ବିଡ଼ମ୍ବନା କରେ କେତେ
ଭର୍ତ୍ସନା କରେ ସେ, ରମଣ ବି କରେ, ବିଷାଦ ଭରଇ ଚିତ୍ତେ
ସଦୟ ହୃଦୟେ ମାନବର ସେହୁ ପ୍ରବେଶି କି ହନ୍ତସନ୍ତ
ନ କରଇ ବାମ ନୟନା ସେ ଚିର ପ୍ରହେଳିକା ପ୍ରାଣବନ୍ତ । ୨୧ ।

ବିଶ୍ରମ୍ୟ ବିଶ୍ରମ୍ୟ ବନଦ୍ରୁମାଣାଂ ଛାୟାସୁ ତନ୍ୱୀ ବିଚଚାର କାଚିତ୍
ସ୍ତନୋତ୍ତରୀୟେଣ କରୋଦ୍ଧୃତେନ ନିବାରୟନ୍ତୀ ଶଶିନୋ ମୟୂଖାନ୍ । ୨୨ ।

ଅଦର୍ଶନେ ଦର୍ଶନମାତ୍ରକାମା ଦୃଷ୍ଟ୍ୱା ପରିଷ୍ୱଂଗ ରସୈକଲୋଲାଃ
ଆଲିଂଗିତାୟାଂ ପୁନରାୟତାକ୍ଷ୍ୟା ମାଶାସ୍ମହେ ବିଗ୍ରହୟୋରଭେଦମ୍ । ୨୩ ।

ମାଳତୀ ଶିରସି ଜୃମ୍ଭଣୋନ୍ମୁଖୀ ଚନ୍ଦନଂ ବପୁଷି କୁଙ୍କୁମାନ୍ୱିତମ୍
ବକ୍ଷସି ପ୍ରିୟତମା ମନୋହରା ସ୍ୱର୍ଗ ଏଷ ପରିଶିଷ୍ଟ ଆଗତଃ । ୨୪ ।

ପ୍ରାଙ୍ ମାମେଷ ସମାଗମାନ୍ୱିତଗୁଣଂ ଜାତାଭିଳାଷଂ ତତଃ
ସବ୍ରୀଡ଼ଂ ତଦନୁ ଶ୍ଲଥୋଦ୍ୟମମନୁପ୍ରତ୍ୟସ୍ତଧୈର୍ଯ୍ୟଂ ପୁନଃ
ପ୍ରେମାର୍ଦ୍ରଂ ସ୍ପୃହଣୀୟନିର୍ଭରରହଃ କ୍ରୀଡ଼ାପ୍ରଗଲ୍ଭ ତତୋ
ନିଃଶଂକାଙ୍ଗ ବିକର୍ଷଣାଧିକ ସୁଖଂ ରମ୍ୟଂ କୁଲସ୍ତ୍ରୀରତମ୍ । ୨୫ ।

ଉରସି ନିପତିତାନାଂ ସ୍ରସ୍ତଧମ୍ମିଲ୍ଲକାନାଂ
ମୁକୁଳିତ ନୟନାନାଂ କିଞ୍ଚିଦୁନ୍ମୀଲିତାନାମ୍
ସୁରତ ଜନିତ ଖେଦ ସ୍ୱିନ୍ନଗଣ୍ଡସ୍ଥଳୀନାଂ
ମଧୁର ମଧୁ ବଧୂନାଂ ଭାଗ୍ୟନ୍ତଃ ପିବନ୍ତି । ୨୬ ।

ଆମୀଳିତ ନୟନାନାଂ ଯଃ ସୁରତରସୋଽନୁ ସଂବିଦଂ କୁରୁତେ
ମିଥୁନୈର୍ମିଥୋଽବଧାରିତ ମବିତଥ ମିଦମେବ କାମ ନିର୍ବହଣମ୍ । ୨୭ ।

ଇଦମନୁଚିତମକ୍ରମଶ୍ଚ ପୁଂସାଂ
ଯଦିହ ଜରାସ୍ୱପି ମନ୍ମଥା ବିକାରାଃ
ଯଦପି ଚ ନ କୃତଂ ନିତମ୍ବିନୀନାଂ
ସ୍ତନପତନାବଧି ଜୀବିତଂ ରତଂ ବା । ୨୮ ।

ଏତତ୍କାମଫଳଂ ଲୋକେ ଯଦ୍ଦ୍ୱୟୋରେକଚିତ୍ତତା
ଅନ୍ୟଚିତ୍ତକୃତେ କାମେ ଶବୟୋରିବ ସଂଗମଃ । ୨୯ ।

ବନସ୍ତେ ବିଟପ ଗୁମ୍ଫାରେ ବିଶ୍ରାମ କରି କରି ଯା'ଏ ବାଳା
ସ୍ତନ ଉତ୍ତରୀୟ ଟୋଳି ହସ୍ତେ ବାରେ ଶଶାଙ୍କ ମୟୂଖମାଳା । ୨୨ ।

ଦର୍ଶନ ଯେ ଯାଏ ନୋହିଛି କେବଳ ଦର୍ଶନ ଇଚ୍ଛା ପ୍ରବଳ
ଦରଶନ ପରେ ମିଳନ ଆକାଂକ୍ଷା ଆଲିଙ୍ଗନ ରସେ ଭୋଳ
ଆୟତନୟନା ଆଲିଙ୍ଗନ ସୁଖ ଭୋଗ କରିବାର ବେଳେ
ମନେମନେ ଭାଳେ ବେନିତନୁ ଭିନ୍ନ ନ ହେଉ ସେ କାଳେ କାଳେ ।୨୩।

ସ୍ୱକର ମାଳତୀମାଳାଶିରେ ତନୁକୁଙ୍କୁମଚନ୍ଦନାର୍ଚ୍ଚିତା
ବକ୍ଷେ ଯେବେ ତନ୍ୱୀପ୍ରେୟସୀ ଶାୟିତ ଶେଷସ୍ୱର୍ଗସୁଖ ସେ ତ । ୨୪ ।

ପ୍ରଥମେ ବାରଣ କରିବା ତା ଗୁଣ, ପରେ ଅଭିଳାଷ ତାର
ସଲଜ୍ଜ ତନୁତାଶ୍ଲଥ ହୁଏ ସ୍ୱୟଂ ଧୈର୍ଯ୍ୟ କରି ପରିହାର
ତହୁଁ ସ୍ପୃହଣୀୟ ପ୍ରେମକ୍ରୀଡ଼ା ରସେ ଏକାନ୍ତେ ପ୍ରଗଳ୍ଭ ସେ ତ
ନିଃଶଙ୍କେ ଆକର୍ଷି ଅଙ୍ଗ ରତିକ୍ରୀଡ଼ା କୁଳସ୍ତ୍ରୀ ସଙ୍ଗେ ଉଚିତ । ୨୫ ।

ବକ୍ଷପରେ ବାଳା ଶାୟିତ କମ୍ପିତ ମୁକୁଳା ତା କେଶପାଶ
ଦରନିମୀଳିତ ନୟନା ଚକିତେ ଗ୍ରହେଁ ତା ତନୁ ଅବଶ
ସୁରତ ଜନିତ ସ୍ୱେଦ ଗଣ୍ଡସ୍ଥଳେ ବିନ୍ଦୁ ବିନ୍ଦୁ ଝଟକଇ
ଅଙ୍ଗନା ଅଧର ମଧୁପାନ ଭାଗ୍ୟବାନ କେବଳ ଲଭଇ । ୨୬ ।

ଅର୍ଦ୍ଧନିମୀଳିତ ନୟନାବାଳାର ରତି ରସେ ପରିତୃପ୍ତି —
ହେଲେ ନରନାରୀ ପରସ୍ପର କାମପୂଜା ସେ ସଫଳ ଅତି । ୨୭ ।

ଅନୁଚିତ ବୃଦ୍ଧକାଳେ ପୁରୁଷର କାମଲିପ୍ସା; ଅନୁଚିତ
ସ୍ତନପାତ ପରେ ନମ୍ରି ରମଣୀ ଇଚ୍ଛଇ ସୁରତି ସେ ତ । ୨୮ ।

ସଂଗମ ସମୟେ ପରସ୍ପର ଅନୁକୂଳ ଚିତ୍ତ କାମ ଫଳ
ପ୍ରତିକୂଳ ମନେ ରତି କରିବା ହେ ଶିବ ସଂଗମ କେବଳ । ୨୯ ।

ପ୍ରଣୟମଧୁରାଃ ପ୍ରେମୋଦ୍‌ଗାଢା ରସାଦଳସାସ୍ତଥା ।
ଭଣିତ ମଧୁରା ମୁଗ୍‌ଧପ୍ରାୟାଃ ପ୍ରକାଶିତ ସଂମଦାଃ
ପ୍ରକୃତି ସୁଭଗା ବିଶ୍ରମ୍ଭାର୍ଦ୍ରାଃ ସ୍ମରୋଦୟଦାୟିନୋ
ରହସି କିମପି ସ୍ୱୈରାଳାପା ହରନ୍ତି ମୃଗୀଦୃଶାମ୍ । ୩୦ ।

ଆବାସଃ କ୍ରିୟତାଂ ଗାଂଗେ ପାପହାରିଣୀ ବାରିଣି
ସ୍ତନମଧ୍ୟେ ତରୁଣ୍ୟା ବା ମନୋହାରିଣି ହାରିଣି । ୩୧ ।

ପ୍ରିୟପୁରତୋ ଯୁବତୀନାଂ ତାବତ୍‌ ପଦମାତନୋତୁ ହୃଦିମାନଃ
ଭବତି ନ ଯାବଚ୍ଚନ୍ଦନତରୁସୁରଭିର୍ମଧୁ ସୁନିର୍ମଳଃ ପବନଃ । ୩୨ ।

## ଋତୁ ବର୍ଣ୍ଣନା

ପରିମଳଭୃତୋ ବାତାଃ ଶାଖା ନବାଂକୁରକୋଟୟୋ
ମଧୁରବିରତୋତ୍କଣ୍ଠା ବାଚଃ ପ୍ରିୟାଃ ପିକପକ୍ଷିଣାମ୍
ବିରଳ ସୁରତସ୍ୱେଦୋଦ୍‌ଗାରା ବଧୂବଦନେନ୍ଦବଃ
ପ୍ରସରତି ମଧୌଧାତ୍ର୍ୟାଂ ଜାତୋ ନ କସ୍ୟ ଗୁଣୋଦୟଃ । ୩୩ ।

ମଧୁରୟଂ ମଧୁରୈରପି କୋକିଳାକଳକଳୈର୍ମଳୟସ୍ୟ ଚ ବାୟୁଭିଃ
ବିରହିଣଃ ପ୍ରଣିହନ୍ତି ଶରୀରିଣୋ ବିପଦି ହନ୍ତ ସୁଧାପି ବିଷାୟତେ । ୩୪ ।

ଆବାସଃ କିଳ କିଂଚିଦେବ ଦୟିତା ପାର୍ଶ୍ୱେ ବିଳାସାଳସଃ
କର୍ଣ୍ଣେ କୋକିଳକାକଳୀକଳରବଃ ସ୍ମେରୋ ଲତାମଣ୍ଡପଃ
ଗୋଷ୍ଠୀ ସତ୍‌କବିଭିଃ ସମଂ କତିପୟୈଃ ସେବ୍ୟାଃ ସିତାଂଶୋଃ କରାଃ
କେଷାଂଚିତ୍ ସୁଖୟନ୍ତି ନେତ୍ର ହୃଦୟେ ଚୈତ୍ରେ ବିଚିତ୍ରାଃ କ୍ଷପାଃ । ୩୫ ।

ପାନ୍ଥସ୍ତ୍ରୀବିରହାନଳାହୁତିକଳାମାତନ୍ୱତୀ ମଂଜରୀ
ମାକନ୍ଦେଷୁ ପିକାଙ୍ଗନାଭିରଧୁନା ସୋତ୍କଣ୍ଠମାଲୋକ୍ୟତେ
ଅପ୍ୟେତେ ନବପାଟଳାପରିମଳାଃ ପ୍ରାଗ୍‌ଭାର ପାଟଚ୍ଚରା
ବାଂତି କ୍ଳାନ୍ତିବିତାନତାନବକୃତଃ ଶ୍ରୀଖଣ୍ଡଶୈଳାନିଳାଃ । ୩୬ ।

ସ୍ୱଭାବ ସୁଶୀଳା, ପ୍ରେମେ ସୁଗଭୀର, ମଦାଳସାରସମୟୀ
ମଂଜୁଳବଚନା, ପ୍ରହେଳକାମୟୀ, ଅବହେଳେ ଆକର୍ଷଇ
ସ୍ୱଭାବେ ସୁନ୍ଦରୀ, ବିଶ୍ୱାସଭାଜନ, ସୁରପୀଡ଼ା ପ୍ରଦାର୍ପିନୀ
ଏକାନ୍ତ ଆଳାପେ ଅନିର୍ବଚନୀୟ ସୁଖଦା ମୃଗଲୋଚନୀ । ୩୦ ।

ବାସକର ସୁରତରଂଗିଣୀ ଶିରେ ବାଣୀ କଳୁଷ ହାରଣୀ
ଅବା ତରୁଣୀର ସ୍ତନମଧ୍ୟେ ମନୋହାରଣୀ ହାରଧାରଣୀ । ୩୧ ।

ପ୍ରିୟ ପାଶେ ଯୋଷା ମାନ ତଦବଧି ହୋଇରହେ ସମ୍ମିଭୂତ
ଯେ ଯାଏ ଚନ୍ଦନ ତରୁ ଛୁଇଁ ବହି ନାହିଁ ମଳୟ ମରୁତ । ୩୨ ।

## ଋତୁ ବର୍ଣ୍ଣନା

ପରିମଳମୟ ମରୁତ, ବିଟପଶାଖାରେ ନବ ମୁକୁଳ
ସୁମଧୁର ଉତ୍କଣ୍ଠିତ ତାରତର କୋକିଳର କଳସ୍ୱର
କଂଚନେ ସ୍ଫୁରନ୍ତି ସଂବେଗରେ ଶ୍ୱେଦବିନ୍ଦୁ ବଧୂ ମୁଖେନ୍ଦୁରେ
ଏମନ୍ତ ବସନ୍ତ ନିଶିରେ ମନୋଜ ନ ଜାଗିବ କାହା ଉରେ । ୩୩ ।

ବସନ୍ତେ ମଧୁର ପିକ କଳରବ, ମଧୁର ମଳୟାନିଳ
ବିରହି ମାରଣ କରନ୍ତି, ବିପଦେ ପୀୟୂଷ ହୁଏ ଗରଳ । ୩୪ ।

ବିଚିଲକ ବିଳାସେ ଅଳସ ଶଯ୍ୟା ପାଶେ ପ୍ରିୟା ମଦାଳସୀ
ଶ୍ରୁତି ପଥେ ମୃଦୁ ପିକ କଳରବେ ଲତାମଣ୍ଡପରେ ବସି
ସମ ବୟସର ସୁକବି ଗହଣେ ସିତାଂଶୁକିରଣ କୋଳେ
ଭାଗ୍ୟବନ୍ତ କେହି ସୁଖେ ବିହରଇ ଚଇତ୍ର ନିଶିଥ କାଳେ । ୩୫ ।

ପଥିକ ବନିତା ବିରହ ଅନଳେ ଆହୁତି ସମ ସେ ଚୂତ—
ମୁକୁଳର ମକରନ୍ଦେ ପିକାଙ୍ଗନା ବୃନ୍ଦେ ହୋଇ ଉତ୍କଣ୍ଠିତ
ନବୀନ ପାଟଳ ଗନ୍ଧ ଅପହରି ମଳୟାଚଳ ମରୁତ
ବିରହବେଦନା ବିସ୍ତାରିତ କରେ କରିତାଟିରେ ପ୍ରାଣବନ୍ତ । ୩୬ ।

ସହକାର କୁସୁମକେଶରନିକରଭରାମୋଦ ମୂର୍ଚ୍ଛିତ ଦିଗନ୍ତେ
ମଧୁରମଧୁବିଧୁରମଧୁପେ ମଧୌ ଭବେତ୍କସ୍ୟ ନୋତ୍କଣ୍ଠା । ୩୮ ।

## ଗ୍ରୀଷ୍ମ ବର୍ଣ୍ଣନା

ଅଚ୍ଛାଚ୍ଛଚନ୍ଦନରସାର୍ଦ୍ରକରା ମୃଗାକ୍ଷ୍ୟୋ ଧାରାଗୃହାଣି କୁସୁମାନି ଚ କୌମୁଦୀ ଚ
ମନ୍ଦୋ ମରୁତ୍ସୁମନସଃ ଶୁଚିହର୍ମ୍ୟପୃଷ୍ଠଂ ଗ୍ରୀଷ୍ମେ ମଦଂ ଚ ମଦନଂ ଚ ବିବର୍ଦ୍ଧୟନ୍ତି ।

ସ୍ରଜୋ ହୃଦ୍ୟାମୋଦା ବ୍ୟଜନପବନଶ୍ଚନ୍ଦ୍ରକିରଣାଃ
ପରାଗଃ କାସାରୋ ମଳୟଜରଜଃ ସୀଧୁ ବିଶଦମ୍
ଶୁଚିଃ ସୌଧୋତ୍ସଙ୍ଗଃ ପ୍ରତନୁବସନଂ ପଙ୍କଜଦୃଶୋ
ନିଦାଘେ ତୂର୍ଣ୍ଣଂ ତତ୍ସୁଖମୁପଲଭନ୍ତେ ସୁକୃତିନଃ । ୩୯ ।

ସୁଧାଶୁଭ୍ରଂ ଧାମ ସ୍ଫୁରଦମଳରଶ୍ମିଃ ଶଶଧରଃ
ପ୍ରିୟାବକ୍ତ୍ରାମ୍ଭୋଜଂ ମଳୟଜରଜଶ୍ଚାତି ସୁରଭି
ସ୍ରଜୋହୃଦ୍ୟାମୋଦାସ୍ତଦିଦମଖିଳଂ ରାଗିଣି ଜନେ
କରୋତ୍ୟନ୍ତଃ କ୍ଷୋଭଂ ନ ତୁ ବିଷୟ ସଂସର୍ଗ ବିମୁଖେ । ୪୦ ।

## ବର୍ଷା ସମୟ

ତରୁଣୀ ବେଷା ଦୀପିତକାମା ବିକସିତ ଜାତୀ ପୁଷ୍ପସୁଗନ୍ଧିଃ
ଉନ୍ନତ ପୀନପୟୋଧରଭାରା ପ୍ରାବୃଟ୍ କୁରୁତେ କସ୍ୟ ନ ହର୍ଷଂ । ୪୧ ।

ବିୟଦୁପଚିତମେଘଂ ଭୂମୟଃ କନ୍ଦଳିନ୍ୟୋ
ନବକୁଟଜକଦମ୍ବାମୋଦିନୋ ଗନ୍ଧବାହାଃ
ଶିଖିକୁଳକଳକେକାରାବରଣ୍ୟା ବନାନ୍ତାଃ
ସୁଖିନମସୁଖିନଂ ବା ସର୍ବମୁତ୍କଣ୍ଠୟନ୍ତି । ୪୨ ।

ଉପରି ଘନଂ ଘନପଟଳଂ ତିର୍ଯ୍ୟଗ୍ଗିରୟୋଽପି ନର୍ତ୍ତିତମୟୂରାଃ
ବସୁଧା କନ୍ଦଳଧବଳା ଦୃଷ୍ଟିଂ ପଥିକଃ କ୍ୱାତ୍ର ସଂହରତୁ । ୪୩ ।

ଚୂତମୁକୁଳରକେଶର ସୌରଭେ ମୂର୍ଚ୍ଛିତ ଢଗନ୍ତ ସେ ତ
ମଧୁପାନେମତ୍ତ ମଧୁପ, ବସନ୍ତେ ନହେବ କେ ଉତ୍କଣ୍ଠିତ । ୩୭ ।

## ଗ୍ରୀଷ୍ମ ବର୍ଣ୍ଣନା

ସୁଗନ୍ଧ ଚନ୍ଦନରସେ ବିଲେପିତ ମୃଗାକ୍ଷୀର କରତଳ
ଜଳଯନ୍ତ୍ର ଗୃହେ କୁସୁମସୁବାସ, ସିତାଂଶୁ କିରଣ ଜାଳ
ମଳୟକମ୍ପିତ ଲତା ଅନ୍ତରାଳ ଶୁଚିସୌଧ ଶିରେ ନିଶି
ଗ୍ରୀଷ୍ମେ ମଦନର ମଦଶତଗୁଣ ବଢ଼ାନ୍ତି ସକଳେ ମିଶି । ୩୮ ।

ସଜପୁଷ୍ପମାଳା, ବ୍ୟଜନପବନ, ରଜନୀଶକର ଜାଳ
ଫୁଲରେଣୁ, ସ୍ୱଚ୍ଛସରସୀ, ସୁବାସଚନ୍ଦନ ସୁରା ବିମଳ
ଶୁଚିସୌଧତଳ କମଳନୟନା ସୂକ୍ଷ୍ମନବସନାବାଳୀ
ନିଦାଘେ ଏ ସୁଖ ସମ୍ଭୋଗ ଲଭନ୍ତି ପୁରୁଷ ଯେ ପୁଣ୍ୟଶାଳୀ । ୩୯ ।

ଧବଳ ବିମଳ ନିକେତ ଗଗନେ ଶୁଭ୍ରରଶ୍ମି ଶଶଧର
ପ୍ରିୟମୁଖକଂଜ, ସୁଗନ୍ଧଚନ୍ଦନ, ସୁବାସ କୁସୁମ ହାର
ଏ ସବୁରେ ଗାଢ଼ ଅନୁରାଗ ଯାର, ହୃଦେ କ୍ଷୋଭ ସୁନିଶ୍ଚିତ
ବିଷୟ ସଂସର୍ଗ ବିମୁଖ ଯେ ଜନ ସେ କେବଳ ଏଥୁ ମୁକ୍ତ । ୪୦ ।

## ବର୍ଷା ସମୟ

ଉଦ୍ଦୀପିତ କରେ କାମ ବାମାସମ ଜାତିପୁଷ୍ପ ଗନ୍ଧଭରେ
ଉନ୍ନତ ପୀନ ପୟୋଧର ପ୍ରାବୃଟ ସୁଖୀ ନ କରଇ କାରେ । ୪୧ ।

ଗଗନ ଅଚ୍ଛାଦେ ବରଷଣ ମେଘ ମେଦିନୀ ସେ ଉଲ୍ଲସିତ
ନବକୁଟଜ କଦମ୍ବ ପୁଷ୍ପ ବାସେ ଗନ୍ଧବହ ଆମୋଦିତ
ଶିଖିକୁଳକଳ କେକାରବେ ରମ୍ୟ ଶ୍ୟାମ ଅରଣ୍ୟାନୀ ପ୍ରାନ୍ତ
ସୁଖୀ ଅବା ଦୁଃଖୀ ସଭିଙ୍କି ପ୍ରାବୃଟ କାମେକରେ ଉତ୍କଣ୍ଠିତ । ୪୨ ।

ଉର୍ଦ୍ଧ୍ୱେ ଘୋରଘନ ପାଶେ ନୃତ୍ୟରତ ଶିଖିକୁଳ ଗିରିବନେ
ତୃଣ ଧବଳିତ କ୍ଷିତି, ପଥିକର ସୁଖ କି ସଂଭବ ମନେ । ୪୩ ।

ଇତୋ ବିଦ୍ୟୁଦ୍‌ବଲ୍ଲୀବିଲସିତମିତଃ କେତକତରୋଃ
ସ୍ଫୁରଦ୍‌ଗନ୍ଧଃ ପ୍ରୋଦ୍ୟଜ୍ଜଲଦନିନଦସ୍ଫୂର୍ଜ୍ଜିତ ମିତଃ
ଇତଃ କେକାକ୍ରୀଡ଼ାକଲକଲରବଃ ପକ୍ଷ୍ମଲଦୃଶାଂ
କଥଂ ଯାସ୍ୟନ୍ତ୍ୟେତେ ବିରହ ଦିବସାଃ ସଂଭୃତରସାଃ । ୪୪ ।

ଅସୂରୀ ସଂସାରେ ତମସି ନମସି ପ୍ରୌଢଜଳଦ—
ଧ୍ୱନିପ୍ରାପ୍ତେ ତସ୍ମିନ୍ ପତତି ଦୃଷଦୋ ନୀର ନଚୟେ
ଇଦଂ ସୌଦାମିନ୍ୟାଃ କନକକମନୀୟଂ ବିଲସିତଂ
ମୁଦଂ ଚ ମ୍ଳାନିଂ ଚ ପ୍ରଥୟତି ପଥିଷ୍ୱେବ ସୁଦୃଶାମ୍ । ୪୫ ।

ଆସାରେଣ ନ ହର୍ମ୍ମ୍ୟତଃ ପ୍ରିୟତମୈର୍ଯାତୁଂ ବହିଃ ଶକ୍ୟତେ
ଶୀତେ କମ୍ପନିମିତ୍ତମାୟତଦୃଶା ଗାଢ଼ଂ ସମାଲିଂଗ୍ୟତେ
ଜାତାଃ ଶୀକରଶୀକରାଶ୍ଚ ମରୁତୋ ବାନ୍ତ୍ୟନ୍ତଖେଦଚ୍ଛିଦୋ
ଧନ୍ୟାନାଂ ବତ ଦୁର୍ଦ୍ଦିନଂ ସୁଦିନତାଂ ଯାତି ପ୍ରିୟା ସଂଗମେ । ୪୬ ।

## ଶରତ

ଅର୍ଦ୍ଧଂ ନୀତ୍ୱା ନିଶାୟାଃ ସରଭସ ସୁରତାୟାସଖିନ୍ନଶ୍ଲଥାଙ୍ଗଃ
ପ୍ରୋଦ୍‌ଭୂତାସହ୍ୟତୃଷ୍ଣୋ ମଧୁମଦନିରତୋ ହର୍ମ୍ମ୍ୟପୃଷ୍ଠେ ବିବିକ୍ତେ
ସଂଭୋଗକ୍ଲାନ୍ତକାନ୍ତାଶିଥିଳଭୁଜଲତା ବର୍ଜ୍ଜିତଂ କର୍କରୀତୋ
ଜ୍ୟୋତ୍ସ୍ନାଭିନ୍ନାଚ୍ଛଧାରଂ ପିବତିନସଲିଳଂ ଶାରଦଂ ମନ୍ଦ ଭାଗ୍ୟଃ । ୪୭ ।

## ହେମନ୍ତ

ହେମନ୍ତେ ଦଧିଦୁଗ୍‌ଧସର୍ପିରଶନା ମାଂଜିଷ୍ଠବାସୋଭୃତଃ
କାଶ୍ମୀରଦ୍ରବସାନ୍ଦ୍ରଦିଗ୍‌ଧବପୁଷଃ ଖିନ୍ନା ବିଚିତ୍ରୈ ରତୈଃ
ପୀନୋରଃସ୍ଥଳକାମିନୀଜନକୃତାଶ୍ଳେଷା ଗୃହାଭ୍ୟନ୍ତରଂ
ତାମ୍ବୂଲୀଦଳପୂଗପୂରିତମୁଖା ଧନ୍ୟାଃ ସୁଖଂ ଶେରତେ । ୪୮ ।

## ଶିଶିର

ଚୁମ୍ବନ୍ତ୍ୟୋ ଗଂଡଭିତ୍ତୀରଳକବତି ମୁଖେ ସୀତ୍କୃତାନ୍ୟାଦଧାନା
ବକ୍ଷଃସ୍ୱକଂଚୁକେଷୁ ସ୍ତନଭରପୁଲକୋଦ୍‌ଭେଦମାଦୟନ୍ତଃ
ଊରୂନାକମ୍ପୟନ୍ତଃ ପୃଥୁଜଘନତଟାତ୍ସ୍ରଂସୟନ୍ତୋଂଶୁକାନି
ବ୍ୟକ୍ତଂ କାନ୍ତାଜନାନାଂ ବିଟଚରିତକୃତଃ ଶୈଶିରା ବାନ୍ତିବାତାଃ ।୪୯।

ଏଣେ କଦୂ୍ୟଲ୍ଲତା ବିଳାସ, ପ୍ରଫୁଲ୍ଲ କେତକୀର ମୃଦୁବାସ
ତେଣେ ସେ ଉଦ୍ୟତ ଜଳଦ ଶ୍ରେଣୀର ପ୍ରବଳ ବଜ୍ର ନିର୍ଘୋଷ
ଏଣେ କେକୀଙ୍କ କଳକଳ ରବ, ବିରହିଣୀ ବାଳାଙ୍କର
କେମନ୍ତେ କଟିବ ଉପଦ୍ରବ ଅସହ୍ୟ ବିରହ ବାସର । ୪୪ ।

ଶ୍ରାବଣର ଅତି ନିବିଡ଼ ତମସେ ପ୍ରବଳ ଜଳଦ ଜାଳ
ଅଶନି ନିର୍ଘୋଷେ ପାଷାଣ ସହସେ ବରଷେ ମୂଷଳଧାର
କନକ ରୁଚିର ଦାମିନୀର ଦ୍ୟୁତି ଚମକଇ କ୍ଷଣେ କ୍ଷଣେ
ପଥ ଭୁଲିଲେ ଅଭିସାରିକାର ହରଷ ବିଷାଦ ମନେ । ୪୫ ।

ଶ୍ରାବଣର ଘୋର ଦୁର୍ଦିନେ ଭବନୁ ପ୍ରିୟ ନ ଗମନ୍ତି ନାହିଁ
ଶୀତ ବାତେ କମ୍ପି ଆସ୍ତୃତ ନୟନା ଗାଢ଼େ ଆଲିଙ୍ଗଇ ଯାଇ
ଶୀତଳ ଶୀକର ମରୁତ ପରଶେ ସୁଖୀ ଦୁହେଁ ରତି ଅନ୍ତେ
ଧନ୍ୟ ସେ ପ୍ରେୟସୀ ସଙ୍ଗମେ ଦୁର୍ଦିନ ସୁଦିନ ଯାର ଏମନ୍ତେ । ୪୬ ।

## ଶରତ

ଅର୍ଦ୍ଧନିଶିଅରେ ପ୍ରମତ୍ତ ସୁରତି ଅନ୍ତେ ଶ୍ଲଥ ଅଙ୍ଗତତି
ଭବନ ଶିଖରେ ଏକାନ୍ତେ ସେ ସୁରା ପାନେ ତୃଷାତୁର ଅତି
ସମ୍ଭୋଗାନ୍ତେ କ୍ଲାନ୍ତ ବନିତାଶିଥିଳ କରପଲ୍ଲବୁ ଯେ ନର
ପାନ ନ କରନ୍ତି ଶରତର ଶୀତ ବାରି ମନ୍ଦଭାଗ୍ୟ ତାର । ୪୭ ।

## ହେମନ୍ତ

ଦଧିଦୁଗ୍ଧଧଉତ ଅଙ୍ଗନା, ହେମନ୍ତେ ବାସନ୍ତୀବସନାବୃତା
କସ୍ତୁରୀ କେଶର ଲେପିତା, ବିଚିତ୍ର ରତିବଶେ ପରିଶ୍ରାନ୍ତା
ଭବନେ ଏମନ୍ତ କାମିନୀର ପୀନସ୍ତନ ଆଲିଙ୍ଗନ କରି
ଚୁମ୍ବନ କରେ ଯେ ଗୁବାକତାମ୍ବୁଲ ମୁଖ, ଧନ୍ୟ ଭାଗ୍ୟ ତାରି । ୪୮ ।

## ଶିଶିର

କେଶ ବିକୁଳିତ କରି ମୁଖେରନ୍ଧ୍ରେ ସୀତ୍କାର କରାଏ ଜାତ
କମ୍ପିତ କରି ବସନ ପୟୋଧର ଯୁଗେ ପୁଲକ ଖେଳାଏ ସେ ତ
ପୃଥୁଳ ଜଘନ ତଟୁ ଝୀନ ବାସ ଉଡ଼ାଇ କମ୍ପନ ଉରେ
ଶିଶିରର ବାତ ତରୁଣୀ ତନୁରେ କାମୁକ ସମ ଆଚରେ । ୪୯ ।

କେଶାନାକଳୟଂଦୃଶୋ ମୁକୁଳୟନ୍ ବାସୋ ବଳାଦାକ୍ଷିପ
ନ୍ନାତନ୍ୱନ୍ ପୁଲକୋଦ୍ଗମଂ ପ୍ରକଟୟନ୍ନାଲିଂଗ୍ୟ କମ୍ପଞ୍ଶନୈଃ
ବାରଂବାରମୁଦାରସୀତ୍କୃତକୃତୋ ଦନ୍ତଚ୍ଛଦାନ୍ ପୀଡୟନ୍
ପ୍ରାୟଃ ଶୈଶିର ଏଷ ସମ୍ପ୍ରତି ମରୁତ୍କାନ୍ତାସୁ କାନ୍ତାୟତେ । ୫୦ ।

ଅସାରାଃ ସଂତ୍ୱେତେ ବିରତିବିରସାୟାସବିଷୟା
ଜୁଗୁପ୍ସଂତାଂ ଯଦ୍ୱା ନନୁ ସକଳଦୋଷାସ୍ପଦମିତି
ତଥାପ୍ୟଂତସ୍ତତ୍ତ୍ୱେ ପ୍ରଣିହିତଧିୟା ମପ୍ୟନ୍ତି ବଳ—
ସ୍ତସ୍ୟାପ୍ୟୋଽନାକ୍ଷେପ୍ୟଃ ସ୍ଫୁରତି ହୃଦୟେ କୋଽପି ମହିମା । ୫୧ ।

ଭବନ୍ତୋ ବେଦାନ୍ତପ୍ରଣିହିତଧିୟା ମାପ୍ତଗୁରବୋ
ବିଦଗ୍ଧାଲାପାନାଂ ବୟମପି କବୀନାମନୁଚରାଃ
ତଥାପ୍ୟେତଦ୍ ଭୂମୌ ନ ହି ପରହିତାପୁଣ୍ୟମଧିକଂ
ନଚାସ୍ମିନ୍ ସଂସାରେ କୁବଳୟଦୃଶୋ ରମ୍ୟପରମ୍ । ୫୨ ।

କିମିହ ବହୁଭିରୁକ୍ତୈର୍ୟୁକ୍ତିଶୂନ୍ୟୈଃ ପ୍ରଳାପୈ—
ର୍ଦ୍ୱୟମିହ ପୁରୁଷାଣାଂ ସର୍ବଦା ସେବନୀୟମ୍
ଅଭିନବ ମଦଲୀଲାଲାଳସଂ ସୁନ୍ଦରୀଣାଂ
ସ୍ତନ ଭରପରିଖିନ୍ନଂ ଯୌବନଂ ବା ବନଂ ବା । ୫୩ ।

## ଦୁର୍ବିରକ୍ତ ବର୍ଣ୍ଣନା

ସତ୍ୟଂଜନାବଚ୍ମିନ ପକ୍ଷପାତାଲ୍ଲୋକେଷୁ ସର୍ବେଷୁ ଚ ତଥ୍ୟମେତତ୍
ନାନ୍ୟନ୍ମନୋହାରି ନିତମ୍ବିନୀଭ୍ୟୋ ଦୁଃଖୈକହେତୁର୍ନ ଚ କଶ୍ଚିଦନ୍ୟଃ । ୫୪ ।

ତା ନଦେବ କୃତିନାମପି ସ୍ଫୁରତ୍ୟେଷ ନିର୍ମଳ ବିବେକ ଦୀପକଃ
ଯାବଦେବ ନ କୁରଂଗଚକ୍ଷୁଷାଂ ତାଡ୍ୟତେ ଚପଳଲୋଚନାଞ୍ଚଳୈଃ । ୫୫ ।

ବଚସି ଭବତି ସଂଗତ୍ୟାଗମୁଦ୍ଦିଶ୍ୟ ବାର୍ତ୍ତା
ଶ୍ରୁତିମୁଖରମୁଖାନାଂ କେବଳାଂ ପଣ୍ଡିତାନାମ୍
ଜଘନମରୁଣ ରତ୍ନାଗ୍ରନ୍ଥିକାଞ୍ଚୀକଲାପଂ
କୁବଳୟ ନୟନାନାଂ କୋ ବିହାତୁଂ ସମର୍ଥଃ । ୫୬ ।

କେଶ ଅସ୍ତବ୍ୟସ୍ତ, ଚକ୍ଷୁ ନମୀଳିତ କରାଇ ସେ ତହୁଁ ବନେ
ବାସ ଅପହରି ଆଲିଙ୍ଗନ କରେ, କମ୍ପେ ତନୁ ପୁଲକରେ
ବାରଂବାର ବହୁ ସୀତ୍କାର ଜନିତ ପୀଡ଼ା ତା ଅଧରେ ଦେଇ
ଶିଶିରର ବାତ କାନ୍ତାପାଶେ ସେ ତ କାନ୍ତସମ ଆଚରଇ । ୫୦ ।

ଯଦ୍ଵା ଅସାର, ଯନ୍ତ ପ୍ରତିକୂଳ ବିଷୟ ଭୋଗ ସଂସାରେ
ସବୁ ଅବଗୁଣ ଖଣି ବୋଲି କହି ଯଦ୍ଵା ନିନ୍ଦିବା ତାରେ
ତଥାପି ତ ଅତି ବଳବାନ ସେହୁ, ଜିତେନ୍ଦ୍ରିୟ ଜ୍ଞାନୀଜନ
ମାନସେ ପ୍ରବେଶି ପ୍ରକାଶଇ ତାର ମହିମା ସେ ଅକଳନ । ୫୧ ।

ବେଦାନ୍ତ ବେତ୍ତାଙ୍କ ପ୍ରତିଷ୍ଠିତ ବିଜ୍ଞ ଗୁରୁ ତୁମ୍ଭେ ହୋଇପାର
ଅନୁଚର ଆମେ ବିଦଗ୍ଧ ଆଳାପେ ସିଦ୍ଧ କବିମାନଙ୍କର
ତଥାପି ସଂସାରେ ପର ଉପକାର ଠାରୁ ନାହିଁ ପୁଣ୍ୟକର୍ମ
ପରମ ସୁନ୍ଦର ନାହିଁ ଭବେ କୁବଳୟ ଦୃଶା ତହୁଁ ଆନ । ୫୨ ।

କିବା ପ୍ରୟୋଜନ ବାରଂବାର ସେହି ଯୁକ୍ତିହୀନ ପ୍ରଳାପରେ
ସେବନୀୟ ସଦାମାନବର ବେନି ପୁରୁଷାର୍ଥ ଏ ସଂସାରେ
ଅଭିନବ ମଦାଳସୀ ଲୀଳାମୟୀ ସୁନ୍ଦରୀ ତରୁଣୀଙ୍କର—
ସ୍ତନ ଭରେ ଦରପୀଡ଼ିତ ଯୌବନ ନତୁବା ବନ କନ୍ଦର । ୫୩ ।

## ଦୁର୍ବିଦ୍‌ଉକ୍ତି ବର୍ଣ୍ଣନା

ଶୁଣ ଜନେ କହେ ପକ୍ଷପାତ କିଛି ନ କରି ଏ ସତ୍ୟବାଣୀ
ନାହିଁ ତହୁଁ ନାହିଁ ମନୋହାରିଣୀକେ, ଦୁଃଖରକାରଣ ପୁଣି । ୫୪ ।

କୃତିପୁରୁଷର ନିର୍ମଳ ବିବେକ ସେ ଯାଏ ରହେ ଉଜ୍ଜ୍ୱଳ
ଯେ ଯାଏ ଲଭାଇ ନାହିଁ ତା ମୃଗାକ୍ଷୀ ଚପଳ ନେତ୍ର ଅଂଚଳ । ୫୫ ।

ବେଦାନ୍ତ ପ୍ରଗଲ୍‌ଭ ପଣ୍ଡିତମାନଙ୍କ ମୁଖ୍ ଶୁଣିବାକୁ ମିଳେ
ବଚନେ କେବଳ ସଂଗ ତ୍ୟାଗ କଥା କହୁଥାନ୍ତି ଅନର୍ଗଳେ
ଅରୁଣୋଦ୍ଭିରତ୍ନକାଞ୍ଚିବିଶୋଭିତାତରୁଣୀ ଜଘନ ସ୍ଥଳ
ପରିହାର କରିବାରେ କେ ସମର୍ଥ କୁବଳୟ ନୟନାର । ୫୬ ।

ମତ୍ତେଭକୁମ୍ଭଦଳନେ ଭୁବି ସନ୍ତିଶୂରାଃ
କେଚିତ୍ପ୍ରଚଣ୍ଡ ମୃଗରାଜ ବଧେଽପି ଦକ୍ଷାଃ
କିଂ ତୁ ବ୍ରବୀମି ବଳିନାଂ ପୁରତଃ ପ୍ରସହ୍ୟ
କନ୍ଦର୍ପ ଦର୍ପ ଦଳନେ ବିରଳା ମନୁଷ୍ୟାଃ । ୫୭ ।

ସ୍ୱପରପ୍ରତାରକୋଽସୌ ନିନ୍ଦତି ଯୋଳୀକପଣ୍ଡିତୋ ଯୁବତୀଃ
ଯସ୍ମାତ୍ତପସୋଽପି ଫଳଂ ସ୍ୱର୍ଗସ୍ତସ୍ୟାପି ଫଳଂ ତଥାଽପ୍‌ସରସଃ । ୫୮ ।

ସନ୍ମାର୍ଗେ ତାବଦାସ୍ତେ ପ୍ରଭବତି ସ ନରସ୍ତାବଦେବେନ୍ଦ୍ରିୟାଣାଂ
ଲଜ୍ଜାଂ ତାବଦ୍‌ବିଧତ୍ତେ ବିନୟମପି ସମାଲମ୍ବତେ ତାବଦେବ
ଭ୍ରୂଚାପା କୃଷ୍ଟମୁକ୍ତାଃ ଶ୍ରବଣପଥଗତା ନୀଳପକ୍ଷ୍ମାଣ ଏତେ
ଯାବଲ୍ଲୀଳାବତୀନାଂ ନ ହୃଦି ଧୃତିମୁଷୋ ଦୃଷ୍ଟିବାଣାଃ ପତନ୍ତି । ୫୯ ।

ଉନ୍ମତ୍ତ ପ୍ରେମସଂରମ୍ଭା ଦାରଭନ୍ତେ ଯଦଙ୍ଗନା
ତତ୍ର ପ୍ରତ୍ୟୂହମାଧାତୁଂ ବ୍ରହ୍ମାପି ଖଳୁ କାତରଃ । ୬୦ ।

ତାବନ୍ମହତ୍ତ୍ୱଂ ପାଣ୍ଡିତ୍ୟଂ କୁଳୀନତ୍ୱଂ ବିବେକିତା
ଯାବଜ୍ଜ୍ୱଳତି ନାଙ୍ଗେଷୁ ହତଃ ପଞ୍ଚେଷୁପାବକଃ । ୬୧ ।

ଶାସ୍ତ୍ରଜ୍ଞୋଽପି ପ୍ରଥିତବିନୟୋଽପ୍ୟାତ୍ମବୋଧୋଽପି ବାଢ଼ଂ
ସଂସାରେଽସ୍ମିନ୍ ଭବତି ବିରଳୋ ଭାଜନଂ ସଦ୍‌ଗତୀନାମ୍
ଯେନୈତସ୍ମିନ୍ନିରୟ ନଗରଦ୍ୱାର ମୁଦ୍‌ଘାଟୟନ୍ତୀ
ବାମାକ୍ଷୀଣାଂ ଭବତି କୁଟିଳଭ୍ରୂଲତା କୁଞ୍ଚିକେବ । ୬୨ ।

କୃଶଃ କାଣଃ ଖଞ୍ଜଃ ଶ୍ରବଣରହିତଃ ପୁଚ୍ଛ ବିକଳୋ
ବ୍ରଣୀ ପୂୟକ୍ଲିନ୍ନଃ କୃମିକୁଳଶତୈରାବୃତ ତନୁଃ
କ୍ଷୁଧାକ୍ଷାମୋ ଜୀର୍ଣ୍ଣଃ ପଂରଜକପା ପିତଗଳଃ
ଶୁନୀମନ୍ୱେତି ଶ୍ୱା ହତମପି ନିହନ୍ତ୍ୟେବ ମଦନଃ । ୬୩ ।

ସ୍ତ୍ରୀ ମୁଦ୍ରାଂ ଝଷକେତନସ୍ୟ ଜନନୀଂ ସର୍ବାର୍ଥସଂପତ୍କରୀଂ
ଯେ ମୂଢ଼ାଃ ପ୍ରବିହାୟ ଯାନ୍ତିକୁଧିୟୋ ମିଥ୍ୟାଫଳାନ୍ୱେଷିଣଃ—
ତେ ତେନୈବ ନିହତ୍ୟ ନିର୍ଦ୍ଦୟତରଂ ନଗ୍ନୀକୃତା ମୁଣ୍ଡିତାଃ
କେଚିତ୍ପଞ୍ଚଶିଖୀକୃତାଶ୍ଚ ଜଟିଳାଃ କାପାଳିକାଶ୍ଚାପରେ । ୬୪ ।

ମତ୍ତକରୀ କୁମ୍ଭ ଦଳନେ ସମର୍ଥ ଶୂରଛନ୍ତି ମହୀ ତଳେ
କେ ଅବା ପ୍ରଚଣ୍ଡ ମୃଗରାଜ ବଧ କରିପାରେ ଅବହେଳେ
ବଳବାନ ଏକ ବୀରଙ୍କ ସମ୍ମୁଖେ କହୁଛି ମୁଁ ଦମ୍ଭ ଭରେ
ପ୍ରବଳ କନ୍ଦର୍ପ ଦଳନେ ସମର୍ଥ ବିରଳ ନର ସଂସାରେ । ୫୭ ।

ନିଜ ପର ପ୍ରତାରକ ସେ ପଣ୍ଡିତ ନିନ୍ଦେ ଯେ ଯୁବତୀ ଜନେ
ତପସ୍ୟାର ଯେଣୁ ଫଳ ସ୍ୱର୍ଗ ପୁଣି ତା ଫଳ ଅପ୍‌ସରାମାନେ । ୫୮ ।

ସନ୍ମାର୍ଗେ ସେ ଯାଏ ରହେ ନରତାର ଇନ୍ଦ୍ରିୟ ସଂଯମ କରି
ସଲଜ୍ଜ ସ୍ୱଭାବ, ସବିନୟଗୁଣ ସେ ଯାଏ ରହେ ତାହାର
ଯେ ଯାଏ ଆକର୍ଷି ଭ୍ରୂରୂପ ଶ୍ରବଣ ଯାଏ ନୀଳପକ୍ଷ୍ମଯୁକ୍ତ
ଲୀଳାବତୀର ସେ ଦୃଷ୍ଟିବାଣ ହୃଦେ ନ ହୋଇଛି ନିପତିତ । ୫୯ ।

ଉନ୍ମତ୍ତ ପ୍ରେମର ଆବେଗେ ଅଙ୍ଗନା ଆରମ୍ଭନ୍ତି ଯେଉଁ କର୍ମ
ପ୍ରତିରୋଧ ତାର କରିବାରେ ସ୍ୱୟଂ ବ୍ରହ୍ମା ଅସମର୍ଥ ଜାଣ । ୬୦ ।

ମହତ୍ତ୍ୱ, ପାଣ୍ଡିତ୍ୟ, କୁଳୀନତ୍ୱ ତଥା ବିବେକିତା ସେ ଯାଏ ତ
ଯେ ଯାଏ ନୋହିଛି ଅଙ୍ଗେ ପଞ୍ଚଶର ଅଗ୍ନିଶିଖା ପ୍ରଜ୍ୱଳିତ । ୬୧ ।

ହୋଇପାରି ଶାସ୍ତ୍ରଜ୍ଞାତା ବା ବିନୟୀ ଅବା ଆତ୍ମଜ୍ଞାନୀ ବ୍ରତୀ
ଏ ଭବ ସଂସାରେ ସଦ୍‌ଗତି ଲଭନ ବିରଳ ସେ ନର ଅତି
ଯେହେତୁ ଏଥି ସେ ନରକ ନଗର ଦ୍ୱାର ଉଦ୍‌ଘାଟନ ପାଇଁ
ବାମନୟନାର କୁଟିଳ ଭ୍ରୂଲତା କୁଞ୍ଚି ସଦା ଆକର୍ଷଇ । ୬୨ ।

କଣା, କାଲ୍ଲ, ଶ୍ରେଷ୍ଠା ଦୁର୍ବଳ କୁତ୍ସିତ କୁକ୍‌କୁର ଲାଙ୍ଗୁଳ ହୀନ
ମୂଳ ବିଗଳିତ କୃମି ପରିପୂର୍ଣ୍ଣ, ସାରା ଶରୀରେ ବ୍ରଣ
କ୍ଷୁଧାପ୍ରପୀଡ଼ିତ, ଜରାଗ୍ରସ୍ତ, ଅସ୍ଥିସାରତାଳ; ତଥାପି ତ
କୁକ୍‌କୁରୀ ସଂଗମ ଇଚ୍ଛେ, ଦେଖ କାମ ମୃତକୁ କରେ ଆଘାତ । ୬୩ ।

ମଦନର ମୁଦ୍ରା ରମଣୀ, ଜନନୀ ସେ ତ ସବୁ ସଂପଦର
ମୂଢ଼ ସେ ନିର୍ବୋଧ ତେଜି ତାରେ ଅନ୍ୱେଷଣ କରେ ମିଥ୍ୟା ଫଳ
ବଧି ସେ ଅଧମେ ନିର୍ଦ୍ଦୟେ ମଦନ ଉଲଗ୍ନ ମୁଣ୍ଡିତ କରି
ପଞ୍ଚ ଶିଖାଶିରେ ଜଟିଳ କେ ବୁଲେ କାପାଳିକ ଭେଷ ଧରି । ୬୪ ।

ବିଶ୍ୱାମିତ୍ରପରାଶରପ୍ରଭୃତୟୋ ବାତାମ୍ବୁପର୍ଣ୍ଣାଶନା —
ତେଽପି ସ୍ତ୍ରୀ ମୁଖପଙ୍କଜଂ ସୁଲଳିତଂ ଦୃଷ୍ଟ୍ୱୈବମୋହଂ ଗତାଃ
ଶାଲ୍ୟନ୍ନଂ ସଘୃତଂ ପୟୋଦଧିଯୁତଂ ଭୁଂଜନ୍ତି ଯେ ମାନବା —
ତେଷାଂଇନ୍ଦ୍ରିୟନିଗ୍ରହୋ ଯଦି ଭବେଦ୍ୱିନ୍ଧ୍ୟସ୍ତରେତ୍ସାଗରମ୍ । ୬୫ ।

## ସ୍ତ୍ରୀ ପରିତ୍ୟାଗ ପ୍ରଶଂସା

ସଂସାରେସ୍ମିନ୍ନସାରେ କୁନୃପତିଭବନଦ୍ୱାର ସେବାବଲମ୍ବ—
ବ୍ୟାସଂଗବ୍ୟସ୍ତଧୈର୍ଯ୍ୟଂ କଥମମଲଧିୟୋ ମାନସଂ ସଂବିଦଧ୍ୟୁଃ
ଯଦ୍ୟେତାଃ ପ୍ରୋଦ୍ୟଦିନ୍ଦୁଦ୍ୟୁତିନିଚୟଭୃତୋ ନ ସ୍ୟୁରମ୍ଭୋଜନେତ୍ରାଃ
ପ୍ରେଙ୍ଖତ୍କାଂଚୀକଳାପାଃ ସ୍ତନଭରବିନମନ୍ମଧ୍ୟଭାଗା ସ୍ତରୁଣ୍ୟଃ । ୬୬ ।

ସିଦ୍ଧାଧ୍ୟାସିତ କନ୍ଦରେ ହରବୃଷ ସ୍କନ୍ଧାବଗାଢ଼ ଦ୍ରୁମ
ଗଂଗାଧୌତ ଶିଳାତଳେ ହିମବତଃ ସ୍ଥାନେ ସ୍ଥିତେ ଶ୍ରେୟସି
କଂ କୁର୍ବୀତ ଶିରଃ ପ୍ରଣାମ ମଳିନଂ ମାନଂ ମନସ୍ୱୀଜନୋ
ଯଦ୍ୟସ୍ତକୁରଙ୍ଗଶାବନୟନା ନ ସ୍ୟୁଃ ସ୍ମରାଂସ୍ତ୍ର ସ୍ତ୍ରୀୟଃ । ୬୭ ।

ସଂସାର ତବ ନିସ୍ତାର ପଦବୀ ନ ଦବୀୟସୀ
ଅଂତରା ଦୁସ୍ତରା ନ ସ୍ୟୁର୍ୟଦିରେ ମଦିରେକ୍ଷଣାଃ । ୬୮ ।

ରାଜଂସ୍ତୃଷ୍ଣାଂବୁରାଶେର୍ନହି ଜଗତି ଗତଃ କଶ୍ଚିଦେବାବସନଂ
କୋବାର୍ଥୋଽର୍ଥୈଃ ପ୍ରଭୂତୈଃ ସ୍ୱବପୁଷି ଗଳିତେ ଯୌବନେ ସାନୁରାଗେ
ଗଚ୍ଛାମଃ ସଦ୍ମ ତାବଦ୍ବିକସିତନୟେନେନ୍ଦୀବରା ଲୋକନାନାଂ
ଯାବଚ୍ଚାକ୍ରମ୍ୟ ରୂପଂ ଝଟିତି ନ ଜରାୟା ଲୁପ୍ୟତେ ପ୍ରେୟସୀନାମ୍ । ୬୯ ।

ରାଗସ୍ୟାଗାରମେକଂ ନରକଶତମହାଦୁଃଖସଂପ୍ରାପ୍ତି ହେତୁ—
ମୋହସ୍ୟୋତ୍ପତ୍ତିବୀଜଂ ଜଳଧରପଟଳଂ ଜ୍ଞାନତାରାଧିପସ୍ୟ
କନ୍ଦର୍ପସ୍ୟୈକମିତ୍ରଂ ପ୍ରକଟିତବିବିଧସ୍ପଷ୍ଟଦୋଷ ପ୍ରବନ୍ଧଂ
ଲୋକେସ୍ମିନ୍ନହ୍ୟନର୍ଥଂ ବ୍ରଜକୁଳଦହନଂ ଯୌବନାଦନ୍ୟଦସ୍ତି । ୭୦ ।

ଶୃଙ୍ଗାରଦ୍ରୁମନୀରଦେ ପ୍ରସୃମରଃ କ୍ରୀଡାରସ ସ୍ରୋତସି
ପ୍ରଦ୍ୟୁମ୍ନପ୍ରିୟବାନ୍ଧବେ ଚତୁରତା ମୁକ୍ତାଫଳୋଦନ୍ୱତି
ତନ୍ୱୀନେତ୍ରଚକୋର ପାରଣବିଧୌ ସୌଭାଗ୍ୟ ଲକ୍ଷ୍ମୀନିଧୌ
ଧନ୍ୟଃକୋଽପି ନ ବିକ୍ରିୟାଂ କଳୟତି ପ୍ରାପ୍ତେ ନବେ ଯୌବନେ । ୭୧ ।

ବାପୁ ଜଳ ପର୍ଣ୍ଣଭୋଜ ବିଶ୍ୱାମିତ୍ର ପରାଶର ଆଦି ଯେ ତ
ରମଣୀର ସୁଲଳିତ ମୁଖପଙ୍କଜ ଦର୍ଶନ ମାତ୍ରେ ମୋହିତ
ଶାଳୀ ଅନ୍ନ ଘୃତ ଦଧି ଦୁଗ୍ଧଯୁତ ଭୋଜନ ଯେ ଜନ କରେ
ସେ ଯଦି ଇନ୍ଦ୍ରିୟ ସଂଯମେ ସକ୍ଷମେ, ବିନ୍ଧ୍ୟ ସିନ୍ଧୁ ତରିପାରେ । ୬୫ ।

## ସ୍ତ୍ରୀ ପରିତ୍ୟାଗ ପ୍ରଶଂସା

ଉଦୟୁଦେନ୍ଦୁ କାନ୍ତି କମଳ ନୟନା ରମ୍ୟ ମେଖଳା ଧାରିଣୀ
ସ୍ତନ ଭାରେ ନମ୍ର କଟି ଦେଶ, ଯଦି ନ ଥାନ୍ତେ ବର ତରୁଣୀ
ଅସାର ସଂସାରେ ମାତନ୍ତ ପଦ୍ମାରେ ସେବି ସହି ମନ କ୍ଳେଶ
ଅନୁଚିତ କର୍ମ କରନ୍ତେ କପାଇଁ ବିମଳ ବୁଦ୍ଧି ପୁରୁଷ । ୬୬ ।

ସିଦ୍ଧଙ୍କ ନିବାସ, ଗଙ୍ଗାଜଳ ଧୌତ ହିମାଦ୍ରିର ଶିଳାତଳ—
ଦ୍ରୁମେ ଯହିଁ ହର ବୃଷ ସ୍କନ୍ଧ ଘଷେ ତେଜି ସେହି ପୁଣ୍ୟ ସ୍ଥଳ
ନତ ଶିର ହୋଇ ମନସ୍ୱୀ ପୁରୁଷ ପ୍ରଣମନ୍ତା କପାଁ କାରେ
ସ୍ମର ଶସ୍ତ୍ର ହସ୍ତ କୁରଙ୍ଗ ନୟନା ନ ଥିଲେ ତା ଭବନରେ । ୬୭ ।

ହେ ସଂସାର ତୋତେ ପାରି ହେବା ନୁହେ ତେମନ୍ତ ଦୁଷ୍କର ଭାରି
ଯଦି ମଧ୍ୟେ ତହିଁ ବାଧକ ନୁହନ୍ତା ମଦିରଲୋଚନା ନାରୀ । ୬୮ ।

ହେ ରାଜା ଜଗତେ ତୃଷ୍ଣା ପୟୋନିଧି ତରିଣେ କେ କ୍ଷମ ନୁହେ
ବହୁଅର୍ଥେ କିବା ପ୍ରୟୋଜନ ଯଦି ଯୌବନ ମଣ୍ଡଳେ ଦେହେ
ଭବନେ ସତ୍ୱରେ ଚଳ ମାନୋପୁଳ ନୟନା ସେ ଗୃହିଁଥିବ
ଜରା ଆକ୍ରମଣ ଲପ୍ତ ହେବା ପୂର୍ବୁ ପ୍ରେୟସୀ ରୂପ ବିଭବ । ୬୯ ।

ଆସକ୍ତି ଆଗାର ନରକର ଶତ ଦୁଃଖର ମୂଳ କାରଣ
ପ୍ରମାଦ ପ୍ରଜନନ ବୀଜ, ଜ୍ଞାନ ଚନ୍ଦ୍ରମାର ମେଘ ଆବରଣ
କନ୍ଦର୍ପର ମିତ୍ର, ପ୍ରବର୍ତ୍ତକ ବହୁ ରୋଗ ଦୋଷ ମାନଙ୍କର
ଯୌବନ ପରି ବିଲୋକେ ଆମୃଧାଷ୍ଟ ଅନର୍ଥ ନାହିଁ ଆଉର । ୭୦ ।

ଶୃଙ୍ଗାରଦ୍ରୁମ ରଜନୀରଦ ସେ ରତି ନଦୀର ରସ ପ୍ରଚୁର
ମଦନର ପ୍ରିୟ ବନ୍ଧୁ, ଚତୁରତା ମୋତିର ମହାସାଗର
ତରୁଣୀ ନେତ୍ର ଚକୋର ବିଧୁ ସେ ତ, ସଉଭାଗ୍ୟ ଲକ୍ଷ୍ମୀ ଧନ
ଏମନ୍ତ ନବ ଯୌବନେ ନିର୍ବିକାର ରହେ ଯେ ପୁରୁଷ ଧନ୍ୟ । ୭୧ ।

## କାମିନୀ ନିନ୍ଦା

କାନ୍ତେତ୍ୟୁତ୍ପଲ ଲୋଚନେତି ବିପୁଳଶ୍ରୋଣୀଭରେତ୍ୟୁନ୍ନତଃ
ପୀନୋତ୍ତୁଙ୍ଗ ପୟୋଧରେତି ସୁମୁଖାମ୍ଭୋଜେତି ସୁଭ୍ରୂରିତି
ଦୃଷ୍ଟ୍ୱା ମାଦ୍ୟତି ମୋଦତେଽଭିରମତେ ପ୍ରସ୍ତୌତି ଜାନନ୍ନପି
ପ୍ରତ୍ୟକ୍ଷାଶୁଚିପୁତ୍ତିକାଂ ସ୍ତ୍ରିୟମହୋ ମୋହସ୍ୟ ଦୁଶ୍ଚେଷ୍ଟିତମ୍ । ୭୨ ।

ସ୍ମୃତା ଭବତି ତାପାୟ ଦୃଷ୍ଟା ଚୋନ୍ମାଦ୍ ବର୍ଦ୍ଧିନୀ
ସ୍ପୃଷ୍ଟା ଭବତି ମୋହାୟ ସା ନାମ୍ ଦୟିତା କଥମ୍ । ୭୩ ।

ତାବଦେବାମୃତମୟୀ ୟାବଲ୍ଲୋଚନଗୋଚରା
ଚକ୍ଷୁଃ ପଥାଦପଗତା ବିଷାଦପ୍ୟତିରିଚ୍ୟତେ । ୭୪ ।

ନାମୃତଂ ନ ବିଷଂ କିଂଚିଦେକାଂ ମୁକ୍ତ୍ୱା ନିତମ୍ବିନୀମ୍
ସୈବାମୃତଲତା ରକ୍ତା ବିରକ୍ତା ବିଷବଲ୍ଲରୀ । ୭୫ ।

ଆବର୍ତ୍ତଃ ସଂଶୟାନାମବିନୟଭବନଂ ପତ୍ତନଂ ସାହସାନାଂ
ଦୋଷାଣାଂ ସନ୍ନିଧାନଂ କପଟ ଶତମୟଂ କ୍ଷେତ୍ରମପ୍ରତ୍ୟୟାନାମ୍
ସ୍ୱର୍ଗଦ୍ୱାରସ୍ୟ ବିଘ୍ନୋ ନରକପୁରମୁଖଂ ସର୍ବମାୟାକରଣ୍ଡଂ
ସ୍ତ୍ରୀୟନ୍ତ୍ରଂ କେନସୃଷ୍ଟଂ ବିଷମମୃତମୟଂ ପ୍ରାଣିନାଂ ମୋହପାଶଃ । ୭୬ ।

ସତ୍ୟତ୍ୱେନ ଶଶାଂକ ଏଷ ବଦମୀଭୂତୋ ନଚେନ୍ଦୀବର—
ଦ୍ୱନ୍ଦ୍ୱଂ ଲୋଚନାଣଂ ଗତଂ ନ କନକୈରପ୍ୟଂଗୟଂଷ୍ଟିଃ କୃତା
କିନ୍ତ୍ୱେବଂ କବିଭିଃ ପ୍ରତାରିତମନାସ୍ତତ୍ତ୍ୱଂ ବିଜାନନ୍ନପି
ତ୍ୱଂ ମାସାସ୍ଥିମୟଂ ବପୁର୍ମୃଗଦୃଶାଂ ମଂଦୋ ଜନଃ ସେବତେ । ୭୭ ।

ଲୀଳାବତୀନାଂ ସହଜା ବିଳାସାସ୍ତ ଏବ ମୂଢ଼ସ୍ୟ ହୃଦି ସ୍ଫୁରନ୍ତି
ରାଗୋ ନଳିନ୍ୟା ହି ନିସର୍ଗ ସିଦ୍ଧ ସ୍ତତ୍ର ଭ୍ରମତ୍ୟେବ ମୁଧା ଷଡ଼ଂଘ୍ରିଃ । ୭୮ ।

ୟଦେତ ପୂର୍ଣ୍ଣେନ୍ଦୁ ଦ୍ୟୁତିହରମୁଦାରାକୃତି ବରଂ
ମୁଖାବ୍ଜଂ ତନ୍ୱଂଗ୍ୟାଃ କଲ ବସତି ତତ୍ରାଧାର ମଧୁ
ଇଦଂ ତାବତ୍ପାକଦ୍ରୁମ ଫଳମିବାତୀବ ବିରସଂ
ବ୍ୟତୀତେ ସ୍ମିନ୍ କାଲେ ବିଷମିବ ଭବିଷ୍ୟତ୍ୟ ସୁଖଦମ୍ । ୭୯ ।

## କାମିନୀ ନିନ୍ଦା

ଉତ୍ପଳ ଲୋଚନା, ସ୍ଥୂଳନିତମ୍ବିନୀ, କାନ୍ତା, ପୀନପୟୋଧରା
ପଙ୍କଜ ବଦନା, ଭ୍ରୂଲତା ରୁଚିର, କବି ବିଜ୍ଞଜନେ ପରା
ଜାଣି ଜାଣି ଆହା ପ୍ରତ୍ୟକ୍ଷେ ଅଶୁଚି ପୁତ୍ତଳୀ ରମଣୀ ଜାତି
ଉତ୍ସୁକେ ଆମୋଦେ ରମଣ କରନ୍ତି, ଦେଖାଏ 'ମୋହ'ର ଖ୍ୟାତି । ୭୨ ।

ସ୍ମରଣ ଯାହାର ସଂତାପ, ଦର୍ଶନ ହୃଦୟେ ଉନ୍ମାଦ ଭରେ
ସ୍ପର୍ଶ ମହା ମୋହ ଜାତକରେ, ପ୍ରିୟା କାହିଁକି କହିବ ତାରେ । ୭୩

ସେ ଯାଏ ଅମୃତମୟୀ ସେ ଯେ ଯାଏ ଥାଏ ନେତ୍ର ଅଂତରାଳେ
ଦୃଷ୍ଟିପଥ ହେଲେ ଅନ୍ତର ବିଷାଦ ବିଷ ତହୁଁ ବଳି ପଡ଼େ । ୭୪ ।

କେବଳ ପୀୟୂଷ ଅବା ଖାଲି ବିଷ ନୁହଇ ତ କେବେ ନାରୀ
ଅନୁରାଗବେଳେ ଅମୃତଲତା ସେ ବିରାଗେ ବିଷ ବଲ୍ଲରୀ । ୭୫ ।

ସନ୍ଦେହ ଭଉଣୀ, ଅବିନୟ ଗୃହ ନଗରୀ ସେ ସାହସର
ଦୁର୍ଗୁଣ ମଞ୍ଜୁଷା, କ୍ଷେତ୍ର ସେ ସହସ୍ର କପଟ ଅବିଶ୍ୱାସର
ନରକର ଦ୍ୱାର, ସ୍ୱର୍ଗ ବିଘ୍ନ, ସବୁ ମାୟାର ସଂପୁଟ ନାରୀ
ସୁଧାମୟ ବିଷଯନ୍ତ୍ର କେ ରଚିଲା ପ୍ରାଣୀକର ମୋହକାରୀ । ୭୬ ।

ପ୍ରକୃତରେ ମୁଖ ନୁହଇ ଚନ୍ଦ୍ରମା, ନୁହଇ ସେ ବେନିନେତ୍ର
ନବ ଇନ୍ଦୀବର; କନକଯଷ୍ଟିରେ ତନୁ ନୁହେ ବିନିର୍ମିତ
ଜାଣି ଏହି ତତ୍ତ୍ୱ କବି ବର୍ଣ୍ଣନାରେ ପ୍ରତାରିତ ମୂର୍ଖ ନର
ସଂଭୋଗ କରନ୍ତି ଚର୍ମ ମାଂସ ଅସ୍ଥିମୟ ତନୁ ତନ୍ୱୀଙ୍କର । ୭୭ ।

ସ୍ୱଭାବ ସହଜ ଲୀଳାବିଳାସିନୀ ମୂର୍ତ୍ତି ହୃଦ ମୋହକରେ
ନଳିନୀ ଲଳନା ପ୍ରକୃତିର କୃତି ବୃଥା ତହିଁ ଅଳି ଭୁଲେ । ୭୮ ।

ପୂର୍ଣ୍ଣଇନ୍ଦୁଦ୍ୟୁତି ବିନିନ୍ଦିତ ମୁଖ ପଙ୍କଜ ଶୋଭଇ ସତ
ତନ୍ୱୀ ତରୁଣୀର ବନ୍ଧୂଳି ଅଧର ପଲ୍ଲବେ ମଧୁ ସଂଚିତ
ଏସବୁ ଏସନ ଯଉବନବେଳେ; ହେଲେ ଗତ ଯଉବନ
ପାକଦ୍ରୁମଫଳ ସମ ସେ ବିରସ, ବିଷମୟ ପରିଣାମ । ୭୯ ।

ଉନ୍ମୀଲଦ୍ଵଲୀତରଙ୍ଗନଳୟା ପ୍ରୋତ୍ତୁଙ୍ଗପୀନସ୍ତନ—
ଦ୍ଵନ୍ଦ୍ଵେନୋଦ୍ୟତଚକ୍ରବାକ ମିଥୁନା ବକ୍ତ୍ରାମ୍ବୁଜୋଦ୍‌ଭାସିନୀ
କାନ୍ତାକାରଧରା ନଦୀୟମଭିତଃ କ୍ରୂରାଶୟା ନେଷ୍ୟତେ
ସଂସାରାର୍ଣ୍ଣବମଜ୍ଜନଂ ଯଦି ତତୋ ଦୂରେଣ ସଂତ୍ୟଜ୍ୟତାମ୍ । ୮୦ ।

ଜଲ୍ପନ୍ତି ସାର୍ଦ୍ଧମନ୍ୟେନ ପଶ୍ୟନ୍ତ୍ୟନ୍ୟଂ ସବିଭ୍ରମା
ହୃଦୟେ ଚିନ୍ତୟନ୍ତ୍ୟନ୍ୟଂ ପ୍ରିୟଃ କୋ ନାମ ଯୋଷିତାମ୍ । ୮୧ ।

ମଧୁ ତିଷ୍ଠତି ବାଚି ଯୋଷିତାଂ ହୃଦି ହାଲାହଲମେବ କେବଳମ୍
ଅତଏବ ନିପୀୟତେଽଧରୋ ହୃଦୟଂ ମୁଷ୍ଟିଭିରେବ ତାଡ୍ୟତେ । ୮୨ ।

ଅପସର ସଖେ ଦୂରାଦସ୍ମାତ୍କଟାକ୍ଷ ଶିଖାନଲା—
ପ୍ରକୃତି ବିଷମାଦ୍ୟୋଷିତ୍ସର୍ପା ଦ୍‌ବିଳାସ ଫଣାଭୃତଃ
ଇତର ଫଣିନା ଦଷ୍ଟା ଶକ୍ୟାଶ୍ଚିକିତ୍ସିତୁ ମୌଷଧୈ—
ଶ୍ଚଟୁଲବନିତା ଭୋଗିଗ୍ରସ୍ତଂ ତ୍ୟଜନ୍ତି ହି ମନ୍ତ୍ରିଣଃ । ୮୩ ।

ବିସ୍ତାରିତଂ ମକରକେତନଧୀବରେଣ ସ୍ତ୍ରୀସଂଜ୍ଞିତଂ ବଡିଶମତ୍ର ଭବାମ୍ବୁରାଶୌ
ଯେନାଚିରାତ୍ତଦଧରାମିଷ ଲୋଲମର୍ତ୍ତ୍ୟ ମତ୍ସ୍ୟାନ୍ ବିକୃଷ୍ୟ ପଚତୀତ୍ୟନୁରାଗବହ୍ନୌ

କାମିନୀକାୟକାନ୍ତାରେ କୁଚପର୍ବତ ଦୁର୍ଗମେ
ମା ସଂଚର ମନଃ ପାନ୍ଥ ତତ୍ରାସ୍ତେ ସ୍ମରତସ୍କରଃ । ୮୫ ।

ବ୍ୟାଦୀର୍ଘେଣ ଚଲେନ ବକ୍ରଗତିନା ତେଜସ୍ଵିନା ଭୋଗିନା
ନୀଳାବ୍ଜଦ୍ୟୁତିନାହିନା ବରମହଂ ଦଷ୍ଟୋ ନ ତଚ୍ଚକ୍ଷୁଷା
ଦଷ୍ଟେ ସନ୍ତି ଚିକିତ୍ସକା ଦିଶିଦିଶି ପ୍ରାୟେଣ ଧର୍ମାର୍ଥିନୋ
ମୁଗ୍ଧାକ୍ଷୀ କ୍ଷଣବୀକ୍ଷିତସ୍ୟ ନ ହି ମେ ବୈଦ୍ୟୋନ ଚାପ୍ୟୌଷଧମ୍ । ୮୬ ।

ଇହ ହି ମଧୁରଗୀତଂ ନୃତ୍ୟମେତଦ୍ରସୋଽୟଂ
ସ୍ଫୁରତି ପରିମଳୋଽସୌ ସ୍ପର୍ଶ ଏଷ ସ୍ତନାନାମ୍
ଇତି ହତ ପରମାର୍ଥୈରିନ୍ଦ୍ରିୟୈର୍ଭ୍ରାମ୍ୟମାଣୋ
ସ୍ଵହିତକରଣଦକ୍ଷୈଃ ପଞ୍ଚଭିର୍ବଂଚିତୋଽସି । ୮୭ ।

ଉଦରସ୍ଥି ବଳୀ ତରଙ୍ଗାବଳୀ ସେ ପୀନ ପୟୋଧର
ଊର୍ଦ୍ଧ୍ୱମୁଖବେନ ଚକ୍ରବାକ ସ୍ରୋତ ବଦନାମ୍ବୁଜ ଖସ୍ୱର
କାମିନୀର ରୂପ ତରଙ୍ଗିଣୀ ସମ ଭୟଙ୍କର କ୍ରୂର ଗତି
ସଂସାର ସାଗରେ ନିମଜ୍ଜିବ ଯଦ୍ଧ ରହ ତହୁଁ ଦୂରେ ଅତି । ୮୦ ।

କା ସଙ୍ଗେ କରେ ସେ ଆଳାପ କାହାରେ ଗୃହେଁ ନେହେ ଲାଳାୟିତ
ହୃଦେଶଚନ୍ତେ ପ୍ରିୟ ଆନ କାହାରେ ସେ, ତାହାର ନାମ ଯୋଷିତ । ୮୧

ଯୁବଣ୍ଣ ଅଧରେ ମଧୁ ସଂଚିତ ତା ହୃଦେ ଖାଲି ହଳାହଳ
ତେଣୁ ତା ଅଧର ପାନ କରି ହୃଦେ କରନ୍ତୁ ମୁଷ୍ଟି ପ୍ରହାର । ୮୨ ।

ସଖେ ତା କଟାକ୍ଷ ବିଶିଖ ଅନଳ ଶିଖାରୁ ପଳାଅ ଦୂରେ
ସ୍ୱଭାବେ କୁଟିଳ ଯୋଷା ଫଣିଫଣା ଭଗ୍ନ ବିଳାସ ଗରଳେ
ଇତର ସର୍ପ ଦଂଶନ ପ୍ରତିକାର ଔଷଧ ଭବେ ମିଳେ
ଚତୁର ବନିତା ଭୋଗୀ ଦଂଶିତ ଯେ ମନ୍ତ୍ର ଜାଣ କେଜେ ତାରେ । ୮୩

ମକର କେତନ ଧୀବର ବସ୍ଥିଏ ଘୋର ଭବ ଅମ୍ବୁଧିରେ
ମହା ମୋହମୟୀ ରମଣୀ ରୂପ ତା ଜାଳ ଅତି ଯତନରେ
କାମିନୀ ଅଧର ମାଂସଲେଶ୍ମ ନରରୂପ ମତ୍ସ୍ୟ ତରତରେ
ଆକର୍ଷି ସେ ପାକ କରେ ମହାମୋଦେ ଅନୁରାଗ ଅନଳରେ । ୮୪ ।

କାମିନୀର ତନୁ କାନ୍ତାରେ ଦୁର୍ଗମ ପୀନସ୍ତନ ଗିରିବର
ରେ ମନ ପଥିକ ନଯାଅ ତୁ ତହିଁ ଲୁଚିଛି ସ୍ମର ତସ୍କର । ୮୫ ।

ଚଂଚଳେ ଚଳେ ସେ ବକ୍ରଗତି ତାର ତେଜସ୍ୱୀ ଭୁଜଙ୍ଗବର
କୃଷ୍ଣକାୟ ନୀଳକମଳବରଣ ତା ଦଂଶନ ବରଂ ଭଲ
ଦଗେ ଦଗେ ତାର ଚିକିତ୍ସକ ଥିବେ ସକଳେ ପ୍ରାୟ ଧାର୍ମିକ
ମୃଗାକ୍ଷୀ କଟାକ୍ଷ ଦଂଶନର ନାହିଁ ଔଷଧ ନ ଚିକିତ୍ସକ । ୮୬ ।

ସଂସାରେ ମଧୁରଗୀତ, ରମ୍ୟ ନୃତ୍ୟ, ରସ ଅତି ରୁଚିକର
ପ୍ରବାହିତ ସୁରଭିତ ବାୟୁ, ସ୍ପର୍ଶସୁଖ ସ୍ତନ ରମଣୀର
ପରମାର୍ଥ ପରିପନ୍ଥି ଏ ତାହାର ଅତି ଅମଙ୍ଗଳକର
ଇନ୍ଦ୍ରିୟମାନଙ୍କ ବିଷୟରେ ଭ୍ରମି ଚିର ପ୍ରବଞ୍ଚିତ ନର । ୮୭ ।

ନଗମ୍ୟୋ ମନ୍ତ୍ରାଣାଂ ନ ଚ ଭବତି ଭୈଷଜ୍ୟ ବିଷୟୋ
ନ ଚାପି ପ୍ରଧ୍ୱଂସଂ ବ୍ରଜତି ବିବିଧୈଃ ଶାନ୍ତିକଶତୈଃ
ଭ୍ରମାବେଶାଦଙ୍ଗେ କମପି ବିଦଧଦ୍ଭଙ୍ଗ୍ୟ ମସମଂ
ସ୍ମରାପସ୍ମାରୋଽୟଂ ଭ୍ରମୟତି ଦୃଶଂ ଘୂର୍ଣ୍ଣୟତି ଚ । ୮୮ ।

ଜାତ୍ୟନ୍ଧାୟ ଚ ଦୁର୍ମୁଖାୟ ଚ ଜରାଜୀର୍ଣ୍ଣା ଖିଳାଙ୍ଗାୟ ଚ
ଗ୍ରାମୀଣାୟ ଚ ଦୁଷ୍କୁଳାୟ ଚ ଗଳତ୍କୁଷ୍ଠାଭିଭୂତାୟ
ୟଚ୍ଛନ୍ତୀଷୁ ମନୋହରଂ ନିଜବପୁର୍ଲକ୍ଷ୍ମୀ ଲବ ଶ୍ରଦ୍ଧୟା
ପଣ୍ୟସ୍ତ୍ରୀଷୁ ବିବେକକଳ୍ପଲତିକାଶସ୍ତ୍ରୀଷୁ ରଜ୍ୟତେ କଃ । ୮୯ ।

ବେଶ୍ୟାସୌ ମଦନଜ୍ୱାଳା ରୂପେନ୍ଧନ ସମେଧିତା
କାମିଭିର୍ୟତ୍ର ହୂୟନ୍ତେ ଯୌବନାନି ଧନାନି ଚ । ୯୦ ।

କଶ୍ଚୁମ୍ବତି କୁଳପୁରୁଷୋ ବେଶ୍ୟାଧରପଲ୍ଲବଂ ମନୋଜ୍ଞମପି
ଚାରଭଟ ଚୌର ଚେଟକ ନଟ ବିଟ ନିଷ୍ଠୀବନଶରାବମ୍ । ୯୧ ।

## ସୁବିରକ୍ତ ପ୍ରଶଂସା

ଧନ୍ୟାସ୍ତ ଏବ ତରଳାୟତ ଲୋଚନାନଂ
ତାରୁଣ୍ୟରୂପଘନ ପୀନ ପୟୋଧରାଣାମ୍
କ୍ଷାମୋଦରୋପରିଲସତ୍ତ୍ରିବଲୀଲତାନାଂ
ଦୃଷ୍ଟ୍ୱାକୃତିଂ ବିକୃତି ମେତି ମନୋ ନ ୟେଷାମ୍ । ୯୨ ।

ବାଲେ ଲୀଳାମୁକୁଳିତମମୀ ସୁନ୍ଦର ଦୃଷ୍ଟିପାତାଃ
କିଂ କ୍ଷିପ୍ୟନ୍ତେ ବିରମବିରମ ବ୍ୟର୍ଥ ଏବ ଶ୍ରମସ୍ତେ
ସଂପ୍ରତ୍ୟନ୍ୟେ ବୟମୁପରତଂ ବାଲ୍ୟମାସ୍ଥା ବନାନ୍ତେ
କ୍ଷୀଣୋ ମୋହସ୍ତୃଣମିବ ଜଗଜ୍ଜାଳ ମାଲୋକୟାମଃ । ୯୩ ।

ଇୟଂବାଳା ମାଂ ପ୍ରତ୍ୟନବରତମିନ୍ଦୀବର ଦଳ—
ପ୍ରଭାଚୋରଂ ଚକ୍ଷୁଃ କ୍ଷିପତି କମଭିପ୍ରେତ ମନୟା
ଗତୋମୋହୋଽସ୍ମାକଂ ସ୍ମରଶାବରବାଣବ୍ୟତିକର—
ଜ୍ୱଳଜ୍ଜ୍ୱାଳାଃ ଶାନ୍ତାସ୍ତଦପି ନ ବରାକୀ ବିରମତି । ୯୪ ।

ସ୍ମର ଅପସ୍ମାର ରୋଗ ପ୍ରତୀକାର ନହୁଏ ମନ୍ତ୍ର ପଠନେ
ନାହିଁ ତା ଔଷଧ ନୁହେ ଉପଶମ ଶାନ୍ତି ବିଧାପୂର୍ବକ କର୍ମେ
ଉପୁଜାଏ ଭ୍ରମ ହିତାହିତ ଜ୍ଞାନ ହରି ଅଙ୍ଗେ ପୀଡ଼ା ଦିଏ
ଦୃଷ୍ଟି ଭ୍ରମୁଥାଏ ଅହରହ ମନ ଅସ୍ଥିର କହି ନ ହୁଏ । ୮୮ ।

ଆଜନ୍ମରୁ ଅନ୍ଧ, କୁତ୍ସିତ ରୂପ ସେ ହେଉ ନପଟ ଗୁଆଁର
ଅବା ଜରାଜୀର୍ଣ୍ଣ, ହୀନକୁଳ ଜାତ, ଗଳିତ କୁଷ୍ଠ ଶରୀର
ଲବମାତ୍ର ଧନ ପାଇଁ କମନୀୟ ତନୁ ଯେ ବିକ୍ରୟ କରେ
ତା'ର ନାସ୍ତି ସେ ବିବେକକଳ୍ପଲତା ଛୁରି; କେ ରମିବ ତାରେ । ୮୯ ।

ଗଣିକା ମଦନ ବହ୍ନି ଶିଖା ଜଳେ ଲଭି ତା ରୂପ ଇନ୍ଧନ
କାମୁକ ମାନବ ହୋମ କରେ ତହିଁ ଆପଣା ଧନ ଯୌବନ । ୯୦ ।

ହେଲେ ହେଁ ମନୋଜ୍ଞ ବେଶ୍ୟାଧର କେବେ ଚୁମ୍ବେକି କୁଳୀନ ନର
ପିକଦାନୀ ସେ ତ ଶଠ, ଚୋର, ଭୃତ୍ୟ, ନଟ, ନୀଚ ଜନଙ୍କର । ୯୧

## ସୁବିରକ୍ତ ପ୍ରଶଂସା

ତରଳ ଆୟତ ଲୋଚନା, ତ୍ରିବଳୀ ଶୋଭିତ ସେ କୃଶୋଦରେ
ଘନ ପୀନ ସ୍ତନା ରୂପେ ମୋହ ନୁହେ ଧନ୍ୟ ସେ ନର ସଂସାରେ । ୯୨ ।

ସୁନ୍ଦରୀ କିପାଇଁ ଲୀଳା ମୁକୁଳିତ ମନ୍ଦମନ୍ଦ ଦୃଷ୍ଟି ତବ
ନିକ୍ଷେପ ମୋ ପ୍ରତି, ରୁହ ରୁହ ତବ ଶ୍ରମ ସେ ତ ବୃଥା ହେବ
ବିଗତ ମୋହ ମୁଁ ଦେଖେ ଭବବନ୍ଧ ତୃଣସମ; ସ୍ମର ବନେ
ସଂପ୍ରତି ନାହିଁ ମୋ ବାଲ ଚପଳତା, ହେଲିଣି ମୁଁ ଆଜ ଜଣେ । ୯୩ ।

ତମୋ ପ୍ରତି ଏ ବାଳୀ ତାର ଇନ୍ଦୀବର ଦଳ ଜ୍ୟୋତି ଚୋର ଆଖି
ନିକ୍ଷେପଇ ଅନବରତ ଶକୁନ୍ତ ମୋହଗତ ମୋର ସେ କି
ମୋହ ତମୋ ବିଗତ ସ୍ମର ଶରଜାତ ପ୍ରଜ୍ୱଳିତ ବହ୍ନି ଜ୍ୱାଳା
ଶାନ୍ତ ହେଲଣି ତ, ତଥାପି ନୁହଇ କ୍ଷାନ୍ତ ସେ ନିର୍ବୋଧ ବାଳା । ୯୪ ।

ଶୁଭ୍ରଂ ସଦ୍ମ ସବିଭ୍ରମା ଯୁବତୟଃ ଶ୍ୱେତାତପତ୍ରୋଜ୍ଜ୍ୱଳା
ଲକ୍ଷ୍ମୀରିତ୍ୟନୁଭୂୟତେ ସ୍ଥିରମିବ ସ୍ଫୀତେ ଶୁଭେ କର୍ମଣି
ବିଚ୍ଛିନ୍ନେ ନିତରାମନଙ୍ଗକଳହ କ୍ରୀଡ଼ାତ୍ରୁଟତ୍ତନ୍ତୁକଂ
ମୁକ୍ତାଜାଳମିବ ପ୍ରୟାତି ଝଟିତି ଭ୍ରଶ୍ୟଦ୍ଦିଶୋ ଦୃଶ୍ୟତାମ୍ । ୯୫ ।

ସଦା ଯୋଗାଭ୍ୟାସବ୍ୟସନ ବଶୟୋ ରାତ୍ମମନସୋ—
ରବିଚ୍ଛିନ୍ନା ମୈତ୍ରୀ ସ୍ଫୁରତି ଯମିନସ୍ତସ୍ୟ କିମୁତୈଃ
ପ୍ରିୟାଣାମାଳାପୈରଧର ମଧୁଭିର୍ବକ୍ତ୍ର ବିଧୁଭିଃ
ସନିଶ୍ୱାସାମୋଦୈଃ ସକୁଚକଲଶାଶ୍ଳେଷ ସୁରତୈଃ । ୯୬ ।

କିଂ କନ୍ଦର୍ପ କରଂ କଦର୍ଥୟସି କିଂ କୋଦଣ୍ଡ ଟଙ୍କାରିତୈ
ରେ ରେ କୋକିଳ କୋମଳଂ କଳରବଂ କିଂ ତ୍ୱଂ ବୃଥା ବଲ୍‌ଗସେ
ମୁଗ୍‌ଧେସ୍ନିଗ୍‌ଧବିଦଗ୍‌ଧମଧୁରୈର୍ଲୋଲୈଃ କଟାକ୍ଷୈରଳଂ
ଚେତଶ୍ଚୁମ୍ବିତ ଚନ୍ଦ୍ରଚୂଡ଼ଚରଣଧ୍ୟାନାମୃତଂ ବର୍ତ୍ତତେ । ୯୭ ।

ଯଦାସୀଦଜ୍ଞାନଂ ସ୍ମରତିମିରସଂଗ୍ରହ ଜନିତଂ
ତଦା ସର୍ବଂ ନାରୀମୟମିଦମଶେଷଂ ଜଗଦଭୂତ୍
ଇଦାନୀମସ୍ମାକଂ ପଟୁତର ବିବେକାଞ୍ଜନ ଦୃଶାଂ
ସମୀଭୂତା ଦୃଷ୍ଟିସ୍ତ୍ରିଭୁବନମପି ବ୍ରହ୍ମମନୁତେ । ୯୮ ।

ବୈରାଗ୍ୟେ ସଂଚରତ୍ୟେକୋ ନୀତୌ ଭ୍ରମତି ଚାପରଃ
ଶୃଙ୍ଗାରେ ରମତେ କଶ୍ଚିଦ୍ ଭୁବି ଭେଦାଃ ପରସ୍ପରମ୍ । ୯୯ ।

ଯଦସ୍ୟ ନାସ୍ତି ରୁଚିରଂ ତସ୍ମିଂସ୍ତସ୍ୟା ସ୍ପୃହା ମନୋଜ୍ଞେଽପି
ରମଣୀୟେଽପି ସୁଧାଂଶୌ ନ ମନଃ କାମଃ ସରୋଜିନ୍ୟାଃ । ୧୦୦ ।



ସୁବିମଳ ବାସ, ବିଳାସିନୀ ନାରୀ, ଶ୍ୱେତଚ୍ଛଦ ସମୁଜ୍ଜ୍ୱଳ
ସଂପଦ ସୃଷ୍ଟିରେ ଭୋଗ କରେ ନର ପୁଣ୍ୟ ବୃଦ୍ଧିବେଳେ ତାର
ଅନଙ୍ଗକ୍ରୀଡ଼ାରେ ଛିନ୍ନତନ୍ତୁ ମାଳା ମୋତି ଯଥା ବିଛୁରଇ
ପୁଣ୍ୟ କ୍ଷୟେ ତଥା କ୍ଷଣକେ ସେ ଭୋଗ ଅଦୃଶ ହୁଅଇ କାହିଁ । ୯୫ ।

ଆତ୍ମା ସଦା ମନ ସଙ୍ଗେ ଅବିଚ୍ଛିନ୍ନ ବନ୍ଧୁତା ଆଚରେ ଯାର
ଯୋଗାଭ୍ୟାସ ନିତ୍ୟ ବ୍ୟସନ, କି ହେବ ଇନ୍ଦ୍ରିୟ ନିଗ୍ରହ ତାର
ପ୍ରିୟାର ଆଳାପ, ତା ଅଧର ମଧୁ ବିଧୁମୁଖ ଶ୍ୱାସ ଗନ୍ଧ
ପୀନସ୍ତନ ଆଲିଙ୍ଗନ ରତି ରସ ତାରେ କି ଦେବ ଆମୋଦ । ୯୬ ।

ରେ କନ୍ଦର୍ପ କିପାଁ କର ପୀଡ଼ା କରି କୋଦଣ୍ଡ ଝଙ୍କାର କରୁ
କୋକିଳ କୋମଳ କଳରବେ କିପାଁ ବୃଥା ଏତେ ରଡ଼ି ମରୁ
ନିର୍ବୋଧ ହେ ବାଳା କିପାଁ ସ୍ନିଗ୍ଧ ଧବଳ କଟାକ୍ଷ ପ୍ରହାର କର
ପ୍ରଭୁ ଚନ୍ଦ୍ରଚୂଡ଼ ପଦେ ଧ୍ୟାନାମୃତ ପାନେ ଚିତ୍ତ ମତ୍ତ ମୋର । ୯୭ ।

ଅଜ୍ଞାନ ଥିଲି ମୁଁ ଯେବେ ହୋଇ ସ୍ମର ତିମିରରେ ନିମଜ୍ଜିତ
ନାରୀମୟ ଖାଲି ଦିଶୁଥିଲା ମୋରେ ଚତୁର୍ଦ୍ଦିଗେ ଏ ଜଗତ
ଏବେ ସୁବିମଳ ବିବେକ ଅଂଜନ ଜନିତ ମୋ ଦିବ୍ୟନେତ୍ର
ସମଦୃଷ୍ଟି ଲଭି ତ୍ରିଭୁବନ ବ୍ରହ୍ମମୟ ଦେଖେ ଅହୋରାତ୍ର । ୯୮ ।

ବୈରାଗ୍ୟେ କେବା କରଇ ଭ୍ରମଣ, 'ନୀତି'ରେ ସ୍ପୃହା କାହାର
ଶୃଙ୍ଗାରେ ରମଣ କରେ କେହୁ, ଭବେ ରୁଚିଭେଦେ ପରସ୍ପର । ୯୯ ।

ମନୋଜ୍ଞ ହେଲେ ହେଁ ଯହିଁ ରୁଚି ନାହିଁ ନଥାଏ ତହିଁ ତା ସ୍ପୃହା
ସରୋଜିନୀ ମନ ନ ମାନେ ସୁନ୍ଦର ହେଲେ ହେଁ ରଜନୀ ନାହା । ୧୦୦



# ବୈରାଗ୍ୟ ଶତକମ୍

ଦିକ୍‌କାଳାଦ୍ୟନବଚ୍ଛିନ୍ନାଽନନ୍ତ ଚିନ୍ମାତ୍ରମୂର୍ତ୍ତୟେ
ସ୍ୱାନୁଭୂତ୍ୟେକ ମାନାୟ ନମଃ ଶାନ୍ତାୟ ତେଜସେ । ୧ ।

ବୋଦ୍ଧାରୋ ମତ୍ସରଗ୍ରସ୍ତାଃ ପ୍ରଭବଃ ସ୍ମୟଦୂଷିତାଃ
ଅବୋଧୋପହତା ଶ୍ଚାନ୍ୟେ ଜୀର୍ଣ୍ଣମଙ୍ଗେ ସୁଭାଷିତମ୍ । ୨ ।

ନ ସଂସାରୋତ୍ପନ୍ନଂ ଚରିତମନୁପଶ୍ୟାମି କୁଶଳଂ
ବିପାକଃ ପୁଣ୍ୟାନାଂ ଜନୟତି ଭୟଂ ମେ ବିମୃଶତଃ
ମହଦ୍ଭିଃ ପୁଣ୍ୟୌଘୈଶ୍ଚିରପରିଗୃହୀତାଶ୍ଚ ବିଷୟା
ମହାନ୍ତୋ ଜାୟନ୍ତେ ବ୍ୟସନମିବ ଦାତୁଂ ବିଷୟିଣାମ୍ । ୩ ।

ଉତ୍‌ଖାତଂ ନିଧିଶଂକୟା କ୍ଷିତିତଳଂ ଧ୍ମାତା ଗିରେର୍ଧାତବୋ
ନିସ୍ତୀର୍ଣ୍ଣ ସରିତାଂ ପତିର୍ନୃପତୟୋ ଯତ୍ନେନ ସଂତୋଷିତାଃ
ମନ୍ତ୍ରାରାଧନତତ୍ପରେଣ ମନସା ନୀତାଃ ଶ୍ମଶାନେ ନିଶାଃ
ପ୍ରାପ୍ତଃ କାଣବରାଟକୋଽପି ନ ମୟା ତୃଷ୍ଣେଽଧୁନାମୁଞ୍ଚମାମ୍ । ୪ ।

ଭ୍ରାନ୍ତଂ ଦେଶମନେ ଦୁର୍ଗବିଷମଂ ପ୍ରାପ୍ତଂ ନ କିଂଚିତ୍‌ଫଳ
ତ୍ୟକ୍ତ୍ୱା ଜାତିକୁଳାଭିମାନମୁଚିତଂ ସେବାକୃତା ନିଷ୍ଫଳା
ଭୁକ୍ତଂ ମାନବିବର୍ଜିତଂ ପରଗୃହେ ସାଶଂକୟା କାକବ—
ତ୍ତୃଷ୍ଣେ ଦୁର୍ମତି ପାପକର୍ମନିରତେ ନାଦ୍ୟାପି ସଂତୁଷ୍ୟତି । ୫ ।

ଖଳୋଲ୍ଲାପାଃ ସୋଢ଼ାଃ କଥମପି ତଦାରାଧନ ପରୈ—
ନିଗୃହ୍ୟାନ୍ତର୍ବାଷ୍ପଂ ହସିତମପି ଶୂନ୍ୟେନ ମନସା
କୃତଶ୍ଚିତ୍ତସ୍ତମ୍ଭଃ ପ୍ରହସିତଧିୟାମଞ୍ଜଳିରପି
ତ୍ୱମାଶେ ମୋଘାଶେ କିମପରମତୋ ନର୍ତ୍ତୟସି ମାମ୍ । ୬ ।

ଆଦିତ୍ୟସ୍ୟ ଗତାଗତୈରହରହଃ ସଂକ୍ଷୀୟତେ ଜୀବିତଂ
ବ୍ୟାପାରୈର୍ବହୁକାର୍ଯ୍ୟଭାରଗୁରୁଭିଃ କାଳୋ ନ ବିଜ୍ଞାୟତେ
ଦୃଷ୍ଟ୍ୱା ଜନ୍ମଜରାବିପତ୍ତିମରଣଂ ତ୍ରାସଶ୍ଚ ନୋତ୍ପଦ୍ୟତେ
ପୀତ୍ୱା ମୋହମୟୀଂ ପ୍ରମାଦମଦିରାମୁନ୍ମତ୍ତଭୂତଂ ଜଗତ୍ । ୭ ।

# ବୈରାଗ୍ୟ ଶତକମ୍

ଦିଗ କାଳାଦିରେ ଅଚ୍ଛିନ୍ନ ଚର ଅନନ୍ତ ଚନ୍ମୟ ମୂର୍ତ୍ତି
ସ୍ୱାନୁଭୂତବେକ୍ଷେୟ, ଶାନ୍ତ ତେଜୋମୟ ଦେବଙ୍କୁ ମୋର ପ୍ରଣତି । ୧ ।

ବହୁ ଜ୍ଞାନର ପରଶ୍ରୀକାତର, ଧନବନ୍ତ ଅହଂକାରୀ
ବାକି ଯେ ଅବୋଧ, କାବ୍ୟ କେ ବୁଝିବ, ନିଜେ ସେ ଯାଏ ମଉଳ ।୨।

ସାଂସାରିକ ଯେତେ ଚରିତ ସେଥିରେ କୁଶଳ ନଦିଶେ ଲେଶ
ପୁଣ୍ୟକର୍ମ ଯେତେ ପରିଣାମ ତାର ଭାବି ମନେ ହୁଏ ତ୍ରାସ
ପୂର୍ବକୃତ ବହୁ ସଂଚିତ ପୁଣ୍ୟର ଫଳ ତ ବିଷୟ ଭୋଗ
ଅନ୍ତକାଳେ ଭୋଗୀ ପାଇଁ ତାହା ପୁଣି ସୃଷ୍ଟି କରେ ବହୁରୋଗ । ୩ ।

ନିଧିଲୋଭେ କ୍ଷିତି ଖୋଳିଛି, ପୋଡିଛି ଗିରି ଧାତୁ କେତେ ମତେ
ଲଂଘିଛି ଜଳଧି ସେବି ଯତ୍ନେ ନୃପମନ ତୋଷିଲି କେତେ
ମନ୍ତ୍ର ଆରାଧନ ମାନସେ ଶ୍ମଶାନେ ଯାପିଲି ଯାମିନୀ ଯେତେ
କଣାକପର୍ଦ୍ଦକ ନପାଇଲି, ଦେବୀ ତୃଷ୍ଣା, ଛାଡ଼ ଏବେ ମୋତେ । ୪ ।

ଭ୍ରମିଲି ଦୁର୍ଗମ ବହୁ ଦେଶାନ୍ତରେ ନପାଇଲି କିଛି ଫଳ
ଜାତିକୁଳ ଅଭିମାନ ତେଜି ସେବା କଲି ତା ହେଲା ନିଷ୍ଫଳ
ସମ୍ମାନ ତେଜି ସଶଂକେ ପରଗୃହେ କାକସମ କରି ଗ୍ରାସ
ହେ ଦୁର୍ମତି ପାପକର୍ମରତ ତୃଷ୍ଣା, ତଥାପି ନହେଲୁ ତୋଷ । ୫ ।

ଖଳ ସେବାଙ୍କର ହତାଦର ବାଣୀ ଶୁଣି ତାର ସହ୍ୟ କରେ
ତା କଟୁବଚନ ହସିଶୂନ୍ୟ ମନେ ହୃଦୟରୁ କୋହ ମାରେ
ମୋ ହୀନତା ଦେଖି ହସିଲେ ପଥର କରି ଗ୍ରନ୍ଥି ହାତପାତେ
ହେ ନିଷ୍ଫଳା ଆଶା ବୃଥା କମ୍ପା ତାର ଦ୍ୱାରେ ନଚାଉଛ ମୋତେ । ୬ ।

ଗତାଗତ କରେ ରବି ପ୍ରତିଦିନ ଜୀବନ ହୁଅଇ କ୍ଷୀଣ
ବହୁ ଗୁରୁଭାର କର୍ମେ ବୁଡ଼ି ନର ହାରେ କାଳବେଳ ଜ୍ଞାନ
ଦେଖି ଜନ୍ମଜରା ବିପତ୍ତି ମରଣ ଭୟ ନ ଜାଗେ ତା ମନେ
ଉନ୍ମତ୍ତ ଜଗତ କି ସେ ମୋହମୟୀ ପ୍ରମାଦ ମଦିରାପାନେ । ୭ ।

ଦୀନା ଦୀନମୁଖୈଃ ସଦୈବ ଶିଶୁକୈରାକୃଷ୍ଟଜୀର୍ଣ୍ଣାମ୍ବରା
କ୍ରୋଶଦ୍ଭିଃ କ୍ଷୁଧିତୈର୍ନରୈର୍ନ ବିଧୁରା ଦୃଶ୍ୟେତ ଚେଦ୍‌ଗେହିନୀ
ଯାଚ୍ଞାଭଂଗଭୟେନ ଗଦ୍‌ଗଦଗଳତ୍ତ୍ରୁଟ୍ୟଦ୍ୱିଲୀନାକ୍ଷରଂ
କୋ ଦେହୀତି ବଦେତ୍ ସ୍ୱଦଗ୍ଧ ଜଠରସ୍ୟାର୍ଥେ ମନସ୍ୱୀ ଜନଃ । ୮ ।

ନିବୃତ୍ତା ଭୋଗେଚ୍ଛା ପୁରୁଷବହୁମାନୋ ବିଗଳିତଃ
ସମାନାଃ ସ୍ୱର୍ୟାତାଃ ସପଦି ସୁହୃଦୋ ଜୀବିତସମାଃ
ଶନୈର୍ଯଷ୍ଟ୍ୟୁତ୍ଥାନଂ ଘନତିମିରରୁଦ୍ଧେ ଚ ନୟନେ
ଅହୋ ଧୃଷ୍ଟଃ କାୟସ୍ତଦପି ମରଣାପାୟଚକିତଃ । ୯ ।

ହିଂସାଶୂନ୍ୟମୟତ୍ନଲଭ୍ୟମଶନଂ ଧାତ୍ରା ମରୁତ୍କଳ୍ପିତଂ
ବ୍ୟାଳାନାଂ ପଶବସ୍ତୃଣାଂକୁରଭୁଜଃ ସୃଷ୍ଟାଃ ସ୍ଥଳୀଶାୟିନଃ
ସଂସାରାର୍ଣ୍ଣବଲଂଘନ କ୍ଷମଧିୟାଂ ବୃତ୍ତିଃ କୃତା ସା ନୃଣାଂ
ତାମନ୍ୱେଷୟତାଂ ପ୍ରୟାଂନ୍ତି ସତତଂ ସର୍ବେ ସମାପ୍ତିଂ ଗୁଣାଃ । ୧୦ ।

ନଧ୍ୟାତଂ ପଦମୀଶ୍ୱରସ୍ୟ ବିଧିବତ୍‌ସଂସାରବିଚ୍ଛିତ୍ତୟେ
ସ୍ୱର୍ଗଦ୍ୱାରକପାଟପାଟନପଟୁର୍ଧର୍ମୋଽପି ନୋପାର୍ଜିତଃ,
ନାରୀପୀନପୟୋଧରୋରୁଯୁଗଳଂ ସ୍ୱପ୍ନେଽପି ନାଲିଂଗିତଃ
ମାତୁଃ କେବଳମେବ ଯୌବନଚ୍ଛେଦେ କୁଠାରା ବୟମ୍ । ୧୧ ।

ଭୋଗାନଭୁକ୍ତା ବୟମେବ ଭୁକ୍ତାସ୍ତପୋ ନତପ୍ତଂ ବୟମେବତପ୍ତାଃ
କାଳୋ ନଯାତୋ ବୟମେବୟାତାସ୍ତୃଷ୍ଣା ନ ଜୀର୍ଣ୍ଣା ବୟମେବ ଜୀର୍ଣ୍ଣାଃ । ୧୨ ।

କ୍ଷାନ୍ତଂ ନ କ୍ଷମୟା ଗୃହୋଚିତସୁଖଂ ତ୍ୟକ୍ତଂ ନ ସନ୍ତୋଷତଃ
ସୋଢ଼ା ଦୁଃସହଶୀତବାତତପନାଃ କ୍ଳେଶାନ୍ନ ତପ୍ତଂ ତପଃ
ଧ୍ୟାତଂ ବିତ୍ତମହର୍ନିଶଂ ନିୟମିତପ୍ରାଣୈର୍ନ ଶଂଭୋଃ ପଦଂ
ତତ୍ତତ୍କର୍ମକୃତଂ ଯଦେବ ମୁନିଭିସ୍ତୈସ୍ତୈଃ ଫଳୈର୍ବଂଚିତମ୍ । ୧୩ ।

ବଳିଭିର୍ମୁଖମାକ୍ରାନ୍ତଂ ପଳିତୈରଂକିତଂ ଶିରଃ
ଗାତ୍ରାଣି ଶିଥିଳାୟନ୍ତେ ତୃଷ୍ଣୈକା ତରୁଣାୟତେ । ୧୪ ।

ଜନନୀର ଜୀର୍ଣ୍ଣ ବସ୍ତ୍ର ଟାଣୁଥିବ ଶିଶୁ ଅତି ଦୀନ ଶୁଷ୍କ
କ୍ଷୁଧିତ ନିରନ୍ନ ସ୍ୱଜନ କ୍ରନ୍ଦନେ ବ୍ୟଥିତା ନାରୀର ମୁଖ
ନଦେଖିଲେ କେଉଁ ମନସ୍ୱୀ ମିତ୍ର ବା ନମିତ୍ର ଗଦ୍‌ଗଦେ ଯାଇ
ଦିଅ ବୋଲି ଭିକ୍ଷା ମାଗିବ ନିଜର ଉଦର ଭରଣ ପାଇଁ । ୮ ।

ଭୋଗ ଇଚ୍ଛା ଯାର ନିଃଶେଷ, ସମ୍ମାନ ବନ୍ଧୁବୃନ୍ଦ ବିଲୁପ୍ତ ସେ
ସମବୟସ୍କ ତା ଯମପୁରେ, ବାକିଛନ୍ତି ସେ ଅଂତକ ଆଶେ
ଧୀରେ ଯଷ୍ଟି ହସ୍ତେ ଉତ୍ଥ ହୁଅନ୍ତି ସେ, ନୟନେ ଘୋର ତିମିର
ତଥାପି ନିଜର ମରଣ ଭାଳି ସେ ଭୟେ ଆତଙ୍କିତ ନର । ୯ ।

ବନାଶ୍ରମଲବ୍ଧ ହିଂସା ହୀନବାୟୁ ସର୍ପର ଆହାର ପୁଣି
ସୃଜିଲ ବିଧାତା, ଭୂତଳ ଶୟନ ତୃଣଭୋଜ ପଶୁଶ୍ରେଣୀ
ଭବାବ୍ଧି ତରୁଣକ୍ଷମବୁଦ୍ଧି ନର ପାଇଁ ବୃତ୍ତି କଲା ସ୍ଥିର
ସମାଧାନ ଯାର କରିବାରେ ସରେ ସବୁ ଗୁଣ ଜ୍ଞାନ ତାର । ୧୦ ।

ସଂସାରଚ୍ଛେଦନ ପାଇଁ ବିଭୁପଦେ ବିଧିରେ ମୁଁ ଧ୍ୟାଏ ନାହିଁ
ସ୍ୱର୍ଗଦ୍ୱାର ଉନ୍ମୋଚନେ ଉପଯୁକ୍ତ ଧର୍ମ ତ ସଞ୍ଚିଲି ନାହିଁ
ନାରୀ ପୀନସ୍ତନ ଉରୁଯୁଗ ସ୍ୱପ୍ନେ କରି ନାହିଁ ଆଲିଙ୍ଗନ
କେବଳ ଜନନୀ ଯୌବନ ବନ କୁଠାର ରୂପେ ମୋ ଜନ୍ମ । ୧୧ ।

ଭୋଗ କଲିନାହିଁ ଜୀବନେ କେବେହେଁ ଭୋଗରହିଁ ଭକ୍ଷ ହେଲି
ତପ ନସାଧିଲି ଜୀବନେ କେବଳ ସନ୍ତାପିତ ସଦା ହେଲି
ନ ସରିଲା କାଳ କାଞ୍ଚିରେ କେବଳ ବୟସ ବିଗତ ମମ
ତୃଷ୍ଣାତେଲ ଜୀର୍ଣ୍ଣ ନହେଲା କେବେ ତ ହେଲି ମୁହିଁ ପୁରାତନ । ୧୨ ।

କ୍ଷମା ମୋ ବିବେକହୀନ, ଗୃହସୁଖ ତେଜିନାହିଁ ସନ୍ତୋଷରେ
ଦୁଃସହ ତପନବାତଶୀତ ସହେ ବିନା ତପ ଭାବନାରେ
ଅହର୍ନିଶି ବିତ୍ତ ଚିନ୍ତା ମନେ, ଶମ୍ଭୁପଦେ ଚିତ୍ତ ନାହିଁ ଟଳେ
ମୁନି ଯା କରନ୍ତି କରେ ସବୁ, ମୁନି ଯୋଗ୍ୟ ଫଳ ନାହିଁ ମିଳେ । ୧୩ ।

ବଳୂଳିତ ରେଖା ଆକ୍ରାନ୍ତ ବଦନ ଶୁଭ୍ର କେଶ ମସ୍ତକର
ଶିଥିଳ ସକଳ ଇନ୍ଦ୍ରିୟ କେବଳ ତୃଷ୍ଣାହିଁ ତରୁଣ ଚିର । ୧୪ ।

ଯୈର୍ନୈବାମ୍ବରଖଂଡେନ ସଂଛାଦିତା ନଶି ଚନ୍ଦ୍ରମାଃ
ତେ ନୈବ ଚ ଢବା ଘନୁରଦ୍ଧୋ ଦୌର୍ଗନ୍ଧ୍ୟମେତଯୋଃ । ୧୫

ଅବଶ୍ୟଂ ଯାତାରଶ୍ଚିରତର ମୁଷିତ୍ୱାପି ବିଷୟା
ବିୟୋଗେ କୋ ଭେଦସ୍ତ୍ୟଜତିନ ଜନୋଯତ୍ସ୍ୱୟମମୂନ୍
ବ୍ରଜନ୍ତଃ ସ୍ୱାତନ୍ତ୍ର୍ୟାଦତୁଲପରିତାପାୟ ମନସଃ
ସ୍ୱୟଂତ୍ୟକ୍ତା ହ୍ୟେତେ ଶମସୁଖମନନ୍ତଂ ବିଦଧତି । ୧୬ ।

## ତୃଷ୍ଣାଧିକାର

ବିବେକ ବ୍ୟାକୋଶେ ବିଦଧତି ଶମେ ଶାମ୍ୟତି ତୃଷା
ପରିଷ୍ୱଙ୍ଗେ ତୁଙ୍ଗେ ପ୍ରସରତିତରାଂ ସା ପରିଣତିଃ
ଜରାଜୀର୍ଣ୍ଣୈଶ୍ୱର୍ଯ୍ୟଗ୍ରସନଗହନାକ୍ଷେପକୃପଣ —
ସ୍ତୃଷାପାତ୍ରଂ ଯସ୍ୟାଂ ଭବତି ମରୁତାମପ୍ୟଧିପତିଃ । ୧୭ ।

## ବିଷୟ ଅଧିକାର

ଭିକ୍ଷାଶନଂ ତଦପି ନୀରସମେକବାରଂ
ଶଯ୍ୟା ଚ ଭୂଃ ପରିଜନୋ ନିଜ ଦେହମାତ୍ରମ୍
ବସ୍ତ୍ରଂ ଚ ଜୀର୍ଣ୍ଣଶତଖଣ୍ଡମଲୀନକନ୍ଥା
ହାହା ତଥାପି ବିଷୟା ନ ପରିତ୍ୟଜନ୍ତି । ୧୮ ।

## ରୂପ ତିରସ୍କାର

ସ୍ତନୋମାଂସଗ୍ରନ୍ଥୀ କନକକଲଶାବିତ୍ୟୁପମିତୌ
ମୁଖଂ ଶ୍ଳେଷ୍ମାଗାରଂ ତଦପି ଚ ଶଶାଂକେନ ତୁଳିତମ୍
ସ୍ରବନ୍ମୂତ୍ରକ୍ଲିନ୍ନଂ କରିବରକରସ୍ପର୍ଦ୍ଧି ଜଘନ---
ମହୋ ନିନ୍ଦ୍ୟଂ ରୂପଂ କବିଜନବିଶେଷୈର୍ଗୁରୁ କୃତମ୍ । ୧୯ ।

ଅଜାନନ୍ଦାହାତ୍ମ୍ୟଂ ପତତୁ ଶଲଭୋ ଦୀପଦହନେ
ସ ମୀନୋପ୍ୟଜ୍ଞାନାଦ୍ ବଡ଼ିଶଯୁତମଶ୍ନାତୁ ପିଶିତମ୍
ବିଜାନନ୍ତୋଽପ୍ୟେତେ ବୟମିହ ବିପଜ୍ଜାଲଜଟିଳା-
ନ୍ନ ମୁଞ୍ଚାମଃ କାମାନହହ ଗହନୋ ମୋହ ମହିମା । ୨୦ ।

ଯେଉଁ ଅଭ୍ରଖଣ୍ଡେ ଚନ୍ଦ୍ରତାଙ୍କି ରନ୍ଧ୍ରନିଶିରେ ଗମଇ ନିତ
ତାକୁହିଁ ଆବୋର ଦିନେ ଚନ୍ଦ୍ରେଶ୍ୱରନୁ ବେଳଙ୍କ ଦେଖ ଦୁର୍ଗତି । ୧୫ ।

ବହୁକାଳ ଭୋଗ କଲେ ହେଁ ବିଷୟ ଅବଶ୍ୟ ତ ଦିନେ ଯିବ
ଯଦି ଦିନେ ଯିବ ତେବେ ନିଜେ ନର ତାରେ କାହିଁ ନ ତେଜିବ
ସେହୁ ଯେବେ ଆପେ ଛାଡ଼ିଯାଏ ମନ ପରିତାପେ ହୁଏ ଘାର
ନିଜେ ନର ତାହାରେ ତେଜିଲେ ଅନନ୍ତ ସୁଖ ହେବ ଅଧିକାର । ୧୬ ।

## ତୃଷ୍ଣାଧିକାର

ବିବେକଜନିତ ଶାନ୍ତଗୁଣ ବିକାଶରେ ତୃଷ୍ଣା ହୁଏ ଶାନ୍ତ
ଯେତିକି ନିବୃତ୍ତି ଆଶ୍ଲେଷିବ ସେତେ ପ୍ରବଳେ ବଢ଼ଇ ସେ ତ
ସକଳ ଐଶ୍ୱର୍ଯ୍ୟ ଭୁଞ୍ଜି ଯାହାପଦେ ଦେବଙ୍କ ସେ ଅଧିପତି
ହୋଇଲେହେଁ ତୃଷ୍ଣାର ପ୍ରବଳ ପ୍ରହାରୁ ଲଭିନାହାନ୍ତି ସେ ମୁକ୍ତି । ୧୭ ।

## ବିଷୟ ଅଧିକାର

ଭିକ୍ଷାନ୍ନ ମାରସ କରଇ ସେ ଗ୍ରାସ ଦିବସରେ ମାତ୍ର ଥରେ
ସ୍ୱଜନ ତାହାର ସ୍ୱଦେହ କେବଳ ଶୟନ ଧରଣୀ ତଳେ
ଶତଖଣ୍ଡ ଜୀର୍ଣ୍ଣମଳୀନକନ୍ଥା ହିଁ ବସନ ତା ଶରୀରର
ତଥାପି ଦେଖନ୍ତି ଆଶ୍ଚର୍ଯ୍ୟ, ବିଷୟ ବାସନା ନ ଛୁଟେ ତାର । ୧୮ ।

## ରୂପ ତିରସ୍କାର

ସ୍ତନଯୁଗ ମାଂସପିଣ୍ଡ ତା ଉପମା କନକକଳଶ ସହ
ଶଶାଙ୍କସମ ସେ କହନ୍ତି ବଦନେ ଶ୍ଳେଷ୍ମ ଖଙ୍କାରର ଗୃହ
ମୂତ୍ରସିକ୍ତ ଯେଉଁ ଜଘନ ଉପମା ତାର କରିବର କର
ନିନ୍ଦାଯୋଗ୍ୟ ନାରୀରୂପ ତା କବିଙ୍କ ଭାଷାରେ ଶୋଭାଭଣ୍ଡାର । ୧୯ ।

ପ୍ରଜ୍ୱଳିତ ଦୀପ ମହିମା ନଜାଣି ପତଙ୍ଗ ପଶଇ ତହିଁ
ବନସୀ ମୂନର ମାଂସଲୋଭେ ମୀନ ଅଜ୍ଞାନେ ଗିଳଇ ଯାଇ
ଜାଣି ଜାଣି ନର ଘାରିହୁଏ କିନ୍ତୁ ବିଷୟ ବିପଦ ଜାଳେ
କାମନାର ମୋହ ମହିମା କଠିନ କିଏ ତାରେ ଟାଳିପାରେ । ୨୦ ।

## ଦୁର୍ଜନ ନିନ୍ଦା

ଫଳମଳମଶନାୟ ସ୍ୱାଦୁପାନାୟ ତୋୟଂ
ଶୟନମବନିପୃଷ୍ଠେ ବଲ୍କଲେ ବାସସୀ ଚ
ନବଧନମଧୁପାନ ଭ୍ରାନ୍ତସର୍ବେନ୍ଦ୍ରିୟାଣା-
ମବିନୟମନୁମନ୍ତୁଂ ନୋତ୍ସହେ ଦୁର୍ଜନାନାମ୍ । ୨୧ ।

## ମାନୀନିନ୍ଦା

ବିପୁଳହୃଦୟୈର୍ଧନ୍ୟୈଃ କୈଶ୍ଚିଜ୍ଜଗଜ୍ଜନିତଂ ପୁରା
ବିଧୃତମପରୈର୍ଦତ୍ତଂ ଚାନ୍ୟୈର୍ବିଜିତ୍ୟ ତୃଣଂ ତଥା
ଇହ ହି ଭୁବନାନ୍ୟନ୍ୟେ ଧୀରାଶ୍ଚତୁର୍ଦଶ ଭୁଞ୍ଜତେ
କତିପୟପୁରସ୍ୱାମ୍ୟେ ପୁଂସାଂ କ ଏଷ ମଦଜ୍ୱରଃ । ୨୨ ।

## ନିଷ୍ପୃହମାନଙ୍କର ଅଧିକାର

ତ୍ୱଂ ରାଜା ବୟମପ୍ୟୁପାସିତ ଗୁରୁପ୍ରଜ୍ଞାଭିମାନୋନ୍ନତାଃ
ଖ୍ୟାତସ୍ତ୍ୱଂ ବିଭବୈର୍ୟଶାଂସି କବୟୋ ଦିକ୍ଷୁ ପ୍ରତନ୍ୱନ୍ତି ନଃ
ଇତ୍ଥଂ ମାନଦ ନାତିଦୂରମୁଭୟୋରପ୍ୟାବୟୋରନ୍ତରଂ
ୟଦ୍ୟସ୍ମାସୁ ପରାଙ୍ମୁଖୋଽସି ବୟମପ୍ୟେକାନ୍ତତୋ ନିସ୍ପୃହାଃ । ୨୩ ।

ଅଭୁକ୍ତାୟାଂ ୟସ୍ୟାଂ କ୍ଷଣମପି ନ ୟାତଂ ନୃପଶତୈ-
ର୍ଭୁବସ୍ତସ୍ୟା ଲାଭେ କ ଇବ ବହୁମାନଃ କ୍ଷିତିଭୁଜାମ୍
ତଦଂଶସ୍ୟାପ୍ୟଂଶେ ତଦବୟବଲେଶେଽପି ପତୟୋ
ବିଷାଦେ କର୍ତ୍ତବ୍ୟେ ବିଦଧତି ଜଡାଃ ପ୍ରତ୍ୟୁତ ମୁଦମ୍ । ୨୪ ।

ମୃତ୍ପିଣ୍ଡୋ ଜଳରେଖୟା ବଲୟିତଃ ସର୍ବୋଽପ୍ୟୟଂ ନନ୍ୱଣୁ—
ରଙ୍ଗୀକୃତ୍ୟ ସ ଏବ ସଂୟୁଗଶତୈ ରାଜ୍ଞାଂ ଗଣୈର୍ଭୁଜ୍ୟତେ
ତଦ୍ଦଦ୍ୟୁର୍ଦଦତେଽଥବା ନ କିମପି କ୍ଷୁଦ୍ରା ଦରିଦ୍ରା ଭୃଶଂ
ଧିଗ୍ଧିକ୍ତାନ୍ ପୁରୁଷାଧମାନ୍ଧନକଣଂ ବାଞ୍ଛନ୍ତି ତେଭ୍ୟୋଽପିୟେ । ୨୫ ।

## ଦୁର୍ଭାଗା ସେବକର ଉକ୍ତି

ନ ନଟା ନ ବିଟା ନ ଗାୟକା ନ ପରଦ୍ରୋହନିବଦ୍ଧବୁଦ୍ଧୟଃ
ନୃପସଦ୍ମନି ନାମ କେ ବୟଂ କୁଚଭାରନମିତା ନ ୟୋଷିତଃ । ୨୬ ।

## ଦୁର୍ଜନ ନିନ୍ଦା

ନ ବଲ୍କଳ ଧନ ମଦରୋପାନେ ଯେ ଜନ୍ମେ ଇନ୍ଦ୍ରିୟ ନର
ସହିବା କିପାଇଁ ଦୁର୍ବଚନସ୍ତ ବାଣୀ ମଉନେ ସେ ଦୁର୍ଜନର
ଭୋଜନପାଇଁ କି ନାହିଁ କନ୍ଦମୂଳ, ପାନପାଇଁ ସ୍ୱାଦୁଜଳ
ଶୟନ ସକାଶେ ପୁଣ୍ୟ ଧରାତଳ, ବସନ ପାଇଁ ବଲ୍କଳ । ୨୧ ।

## ମାନୀ ନିନ୍ଦା

ଧନ୍ୟ ସେ ବିପୁଳ ହୃଦୟ ପୁରୁଷ ଜଗତ ଯେ ସୃଷ୍ଟି କଲେ
ଭୋଗକଲେ ଇସାଜନ୍ତି ଦାନଦେଲେ ତୃଣସମ ଭବତାରେ
ଧନ୍ୟ ସେହୁ ଚତୁର୍ଦ୍ଦଶ ଭୁବନ ଯେ ଭୋଗ କରୁଛନ୍ତି ଧୀର
କିନ୍ତୁ ସ୍ୱଳ୍ପଜନ ଉପରେ ଯେ ସ୍ୱାମୀ ଦେଖ ତାଙ୍କ ମଦଜ୍ୱର । ୨୨ ।

## ନିଷ୍ପୃହମାନଙ୍କର ଅଧିକାର

ତୁମ୍ଭେ ରାଜା ଆମ୍ଭେ ଗୁରୁ ସେବାକର ଜ୍ଞାନ ଅଭିମାନୋନ୍ନତ
ଖ୍ୟାତ ନବଧନ, ଆମ୍ଭ ଯଶ ଚତୁର୍ଦ୍ଦିଗେ କବିମୁଖେ ଗୀତ
ହେ ମାନଦ ତୁମ୍ଭ ଅମ୍ଭ ସ୍ଥିତି ମଧ୍ୟେ ଅନ୍ତର ଅଛିନ୍ତି କ୍ଷୀଣ
ତଥାପି ବିମୁଖ ହେଲେ ତୁମ୍ଭେ, ହେବୁ ତୁମ୍ଭପ୍ରତି ସ୍ପୃହାହୀନ । ୨୩ ।

ଅଭୋଗ୍ୟା ଧରଣୀ ସହସ୍ର ନୃପତି ଭୋଗ କରି ଲଭେ ହେଲେ
ନ ପାରିଲେ ଯାହେ, ତା ଲଭି ସମ୍ମାନ କି ପାଇବେ ନରବରେ
ଶତ ଶତ ସହସ୍ରାଂଶୁ ଏକ ଅଂଶ ଲଭି ମୂର୍ଖ ମହୀପତି
ମହାଗର୍ବେ ସୁଖୀ ହେବନ୍ତି ନିଜକୁ, ଆଶ୍ଚର୍ଯ୍ୟ ନରର ଗତି । ୨୪ ।

ଜଳରେଖା ପରିବେଷ୍ଟିତ ଏ ଧରା କ୍ଷୁଦ୍ର ଏକ ମାଟିପିଣ୍ଡ
ରଣ କରି ରାଜାଗଣ ଭୋଗନ୍ତି ତା କରି ଶତ ଶତ ଖଣ୍ଡ
ଏମନ୍ତ ଯେ କ୍ଷୁଦ୍ର ଭୂପତି ଦରିଦ୍ର ମହାଦାମ୍ଭି ଭବି ତାରେ
ଧିକ ନରାଧମ କଣିକାଏ ଧନ ତାଠାରୁ ଯେ ଆଶା କରେ । ୨୫ ।

## ଦୁର୍ଭାଗା ସେବକର ଉକ୍ତି

ଆମେ ନୋହୁ ନଟ ଗାୟକ ଲମ୍ପଟ ପରଦ୍ରୋହମଗ୍ନମନ
ନ ପୁଣ ବନିତା କୁଚ ଭରନ୍ତା ରାଜସଦେ କାହିଁ ସ୍ଥାନ । ୨୬ ।

ପୁଗଦେବ୍ ବସ୍ତ୍ରାଦିପୁଟମଦବତାଂ କ୍ଳେଶଦ୍ୱତୟେ
ଗତା କାଳେନାସୌ ଋତୁସୁଖସିଦ୍ଧୈ ଋଷପୁଷ୍ଣାମ୍
ଇଦାନୀଂ ତୁ ପ୍ରେକ୍ଷ କ୍ଷିତିତଳଭୁଜଃ ଶାସ୍ତ୍ରବିମୁଖା—
ନହ୍ୱୋ କଷ୍ଟଂ ସାପି ପ୍ରତିହବନମ୍ ଧୈର୍ଯ୍ୟଧଃ ପ୍ରବଶନ୍ତି । ୨୭ ।

## ଅହଂକାରୀ ପୁରୁଷର ନିନ୍ଦା

ସଜାତଃ କୋଽପ୍ୟାସୀନ୍ମଦନରିପୁଣା ମୂର୍ଦ୍ଧ୍ନି ଧବଳଂ
କପାଳଂ ଯସ୍ୟୋଚ୍ଚୈର୍ବିନିହିତମଳଂକାର ବିଧୟେ
ନୃଭିଃ ପ୍ରାଣତ୍ରାଣପ୍ରବଣମତିଭିଃ କୈଶ୍ଚିଦଧୁନା
ନମଦ୍ଭିଃ କଃ ପୁଂସାମୟମତୁଳ ଦର୍ପଜ୍ୱରଭରଃ । ୨୮ ।

ଅର୍ଥାନାମୀଶିଷେ ତ୍ୱଂ ବୟମପି ଚ ଗିରାମୀଶ୍ମହେ ଯାବଦର୍ଥଂ
ଶୂରସ୍ତ୍ୱଂ ବାଦିଦର୍ପଜ୍ୱରଶମନବିଧାବକ୍ଷୟଂ ପାଟବଂ ନଃ
ସେବନ୍ତେ ତ୍ୱାଂ ଧନାଢ୍ୟାମତିମଳହତୟେ ମାମପି ଶ୍ରୋତୁକାମା
ମୟ୍ୟପ୍ୟାସ୍ଥା ନ ତେ ଚେତ୍ତ୍ୱୟି ମମ ସୁତରାମେଷ ରାଜନ୍ ଗତୋଽସ୍ମି । ୨୯ ।

## ନିର୍ମମତା ସ୍ୱରୂପ

ଅତିକ୍ରାନ୍ତଃ କାଳୋ ଲଟଭ ଲଳନା ଭୋଗସୁଭଗୋ
ଭ୍ରମନ୍ତଃ ଶ୍ରାନ୍ତାଃ ସ୍ମଃ ସୁଚିରମିହ ସଂସାରସରଣୌ
ଇଦାନୀଂ ସ୍ୱଃସିନ୍ଧୋସ୍ତଟଭୁବି ସମାକ୍ରନ୍ଦନଗିରଃ
ସୁତାରୈଃ ପୂତ୍କାରୈଃ ଶିବଶିବଶିବେତି ପ୍ରତନୁମଃ । ୩୦ ।

ମାନେ ମ୍ଳାୟିନି ଖଣ୍ଡିତେ ଚ ବସୁନି ବ୍ୟର୍ଥେ ପ୍ରୟାତେଽର୍ଥିନି
କ୍ଷୀଣେ ବନ୍ଧୁଜନେ ଗତେ ପରିଜନେ ନଷ୍ଟେ ଶନୈର୍ଯୌବନେ
ଯୁକ୍ତଂ କେବଳମେତଦେବ ସୁଧିୟାଂ ଯଜ୍ଜହ୍ନୁକନ୍ୟାପୟଃ
ପୂତଗ୍ରାବଗିରୀନ୍ଦ୍ରକନ୍ଦରଦରୀକୁଞ୍ଜେ ନିବାସଃ କ୍ୱଚିତ୍ । ୩୧ ।

ପରେଷାଂ ଚେତାଂସି ପ୍ରତିଦିବସମାରାଧ୍ୟ ବହୁଧା
ପ୍ରସାଦଂ କିଂ ନେତୁଂ ବିଶସି ହୃଦୟ କ୍ଳେଶକଳିତମ୍
ପ୍ରସନ୍ନେ ତ୍ୱୟ୍ୟନ୍ତଃ ସ୍ୱୟମୁଦିତଚିନ୍ତାମଣି ଗୁଣେ
ବିମୁକ୍ତଃ ସଂକଳ୍ପଃ କିମଭିଳଷିତଂ ପୁଷ୍ୟତି ନ ତେ । ୩୨ ।

ବିଜ୍ଞଜନ ମନ କ୍ଲେଶ ହରଣ ଯେ ବିଦ୍ୟାଥିଲା ପୂର୍ବକାଳେ
ବିଷୟୀଜନଙ୍କ ବିଷୟ ସୁଖର କାରଣ ହେଲା ଯେ ପରେ
ଶାସ୍ତ୍ରବିମୁଖ ଏ ନୃପତିମାନଙ୍କ ଅବହେଳା ହେତୁ ସେହି
ବିଦ୍ୟାର ସଂପ୍ରତି ଦେଖି ଅଧୋଗତି ମନେ କଷ୍ଟ ନୁହେ ସହି । ୨୭ ।

## ଅହଂକାରୀ ପୁରୁଷର ନିନ୍ଦା

ଏମନ୍ତ ପୁରୁଷ ଜାତ ହୋଇଥିଲେ ଉଜ୍ଜ୍ୱଳ କପୋଳ ଯାର
ଅଳଂକାର ସମ ଶୋଭା ଦିଶେ ଗଳେ ସ୍ମର ହର ଶିବଙ୍କର
ଏବେ ଯେତେ ନର ଜାତ ହେଉଛନ୍ତି ପ୍ରାଣ ତ୍ରାଣ ବୃତ୍ତି ଯାର
ସ୍ୱଳ୍ପ ଜଳ ମଧ୍ୟେ ପ୍ରତିଷ୍ଠା ଲଭି ସେ ମଦ ଜ୍ୱରେ ଅଧୀଶ୍ୱର । ୨୮ ।

ତୁମେ ରାଜା ଧନାଧିପ ହେଲେ ଆମେ ବିଦ୍ୟାଧନ ଅଧିପତି
ତୁମ୍ଭେ ଶୂର ଆମ୍ଭେ ପ୍ରତିବାଦୀ ଦର୍ପ ଦଳନେ କୁଶଳ ଅତି
ଧନ ଲୋଭୀ ତୁମ୍ଭ ସେବକ, ବିଦ୍ୟାର୍ଥୀ ଆମ୍ଭ ସେବାବ୍ରତୀ କେତେ
ଆମ୍ଭ ପ୍ରତି ଯଦି ଶ୍ରଦ୍ଧାହୀନ ତୁମ୍ଭେ, ଆମ୍ଭେ ଯିବୁ ଆମ୍ଭ ପଥେ । ୨୯ ।

## ନିର୍ମମତା ସ୍ୱରୂପ

ଯୁବତୀ ଲଲନାସଂଭୋଗ ବିସ୍ମୃତ ଯଉବନ ଅତିକ୍ରାନ୍ତ
ସୁଚିର ସଂସାର ସରଣୀରେ ଭ୍ରମି ଭ୍ରମି ହେଲିଣି ତ କ୍ଲାନ୍ତ
ଭାଗୀରଥୀ ତଟ ଭୂମି ପରେ ଏବେ ଶିବ ଶିବ ଶିବ ନାମ
ତାର ସ୍ୱରେ ଜପି ଯାପନ କରିଁ ସାର, ସ୍ମର ପୂର୍ବକୃତ କର୍ମ । ୩୦ ।

ସମ୍ମାନ ଯା ମ୍ଲାନ, ଗତ ବିଭବ, ହତାଶେ ଯାଚକ ଫେରେ
ଗୃହ ବନ୍ଧୁହୀନ, ତ୍ୟକ୍ତ ପରିଜନ, ମୃତ ଯଉବନ ଦୂରେ
ଉଚିତ ଏମନ୍ତ ବିଜ୍ଞଜନ ଯାଇ ନିବାସ କରିବ ଶେଷେ
ଜାହ୍ନବୀର ପୂତ ସଲିଳ ଧଉତ ଗିରି ଗୁହା ବନଦେଶେ । ୩୧ ।

ପ୍ରତିଦିନ ବହୁ କ୍ଲେଶେ ଆରାଧନା କରି ତୋଷିବୁ ପର ମନ
ରେ ମୋର ହୃଦୟ କି ସଂତୋଷ ତହୁଁ ଲଭୁଛୁ କି ସନମାନ
ତୃଷ୍ଣାତେଜି ସବୁ ଅନ୍ତରେ ପ୍ରସନ୍ନ ହୋଇ ଚିନ୍ତାମଣି ସମ
ସ୍ୱଗୁଣେ ଈଶ୍ୱର ଭଜିଲେ କି ମନ ନ ପୁରିବ ମନସ୍କାମ । ୩୨ ।

## ଭୋଗ ପଦ୍ଧତି

ଭୋଗେ ରୋଗଭୟଂ କୁଳେ ଚ୍ୟୁତିଭୟଂ ବିତ୍ତେ ନୃପାଳାଦ୍ଭୟମ୍
ମୌନେ ଦୈନ୍ୟ ଭୟଂ ବଳେ ରିପୁଭୟଂ ରୂପେ ଜରାୟା ଭୟମ୍
ଶାସ୍ତ୍ରେ ବାଦଭୟଂ ଗୁଣେ ଖଳଭୟଂ କାୟେ କୃତାନ୍ତାଦ୍ ଭୟଂ
ସର୍ବଂ ବସ୍ତୁ ଭୟାନ୍ୱିତଂ ଭୁବି ନୃଣାଂ ବୈରାଗ୍ୟମେବାଭୟମ୍ । ୩୩ ।

ଆମୀଷାଂ ପ୍ରାଣାନଂ ତୁଳିତବିସିନୀପତ୍ରପୟସାଂ
କୃତେ କମ୍ନାସ୍ମାଭିର୍ବିଗଳିତବିବେକୈର୍ବ୍ୟବସିତମ୍
ଯଦାଢ୍ୟାନାମଗ୍ରେ ଦ୍ରବିଣମଦନିଃଶଙ୍କ ମନସାଂ
କୃତଂ ବୀତବ୍ରୀଡୈର୍ନିଜଗୁଣକଥା ପାତକମପି । ୩୪ ।

## କାଳ ମହିମା

ଭ୍ରାତଃ କଷ୍ଟମହୋ ମହାନ୍ ସ ନୃପତିଃ ସାମନ୍ତ ଚକ୍ରଂ ଚ ତ—
ପାର୍ଶ୍ୱେ ତସ୍ୟ ଚ ସାପି ରାଜପରିଷତ୍ତାଶ୍ଚନ୍ଦ୍ରବିମ୍ବାନନାଃ
ଉଦ୍ରିକ୍ତଃ ସ ଚ ରାଜପୁତ୍ରନିବହସ୍ତେ ବନ୍ଦିନସ୍ତାଃ କଥାଃ
ସର୍ବଂ ଯସ୍ୟ ବଶାଦଗାତ୍ ସ୍ମୃତିପଦଂ କାଳାୟତସ୍ମୈ ନମଃ । ୩୫ ।

ବୟଂ ଯେଭ୍ୟୋ ଜାତାଶ୍ଚିରପରିଗତା ଏବ ଖଲୁ ତେ
ସମଂ ଯୈଃ ସମ୍ବୃଦ୍ଧାଃ ସ୍ମୃତି ବିଷୟତାଂ ତେଽପି ଗମିତାଃ
ଇଦାନୀ ମେ ତେ ସ୍ମଃ ପ୍ରତିଦିବସମାସନ୍ନପତନା—
ଦ୍‌ଗତାନାସ୍ତୁଲ୍ୟାବସ୍ଥାଂ ସିକତିଲନଦୀତୀରତରୁଭିଃ । ୩୬ ।

ଯତ୍ରାନେକେ କ୍ୱଚିଦପି ଗୃହେ ତତ୍ର ତିଷ୍ଠତ୍ୟଥୈକୋ
ଯତ୍ରାପ୍ୟେକସ୍ତଦନୁ ବହବସ୍ତତ୍ର ଗୃନ୍ତେ ନ ଚୈକଃ
ଇତ୍ଥଂ ଚେମୌ ରଜନିଦିବସୌ ଦୋଲୟନ୍ ଦ୍ୱାବିବାକ୍ଷୌ
କାଳଃ କାଲ୍ୟା ସହ ବହୁକଳଃ କ୍ରୀଡତି ପ୍ରାଣିସାରୈଃ । ୩୭ ।

ତପସ୍ୟନ୍ତଃ ସନ୍ତଃ କିମଧିନିବସାମଃ ସୁରନଦୀଂ
ଗୁଣୋଦାରାନ୍ଦାରାନୁତ ପରିଚରାମଃ ସବିନୟମ୍
ପିବାମଃ ଶାସ୍ତ୍ରୌଘାନୁତ ବିବିଧକାବ୍ୟାମୃତରସା—
ନ ବିଦ୍ମଃ କିଂ କୁର୍ମଃ କତିପୟନିମେଷାୟୁଷି ଜନେ । ୩୮ ।

## ଭୋଗ ପଦ୍ଧତି

ଭୋଗେ ରୋଗ ଭୟ, କୁଳେ ହାନି ଭୟ, ଧନ ଥିଲେ ରାଜ ଭୟ
ମୌନେ ଦୈନ୍ୟ ଭୟ, ବଳେ ଶତ୍ରୁ ଭୟ, ରୂପବାନେ ଜରାଭୟ
ଶାସ୍ତ୍ରବାଦେ ଭୟ, ଗୁଣୀଭୟ ଖଳେ, କାୟାଭୟ କୃତାନ୍ତରେ
ଭୟାନ୍ୱିତ ନର ସବୁ ଦ୍ରବ୍ୟେ, ଖାଲି ଅଭୟ ସେ ବୈରାଗ୍ୟରେ । ୩୩ ।

ପଦ୍ମ ପତ୍ରେ ଜଳ ବିନ୍ଦୁ ସମ ଏ ମୋ ପ୍ରାଣ ଜାଣି ଅନିଶ୍ଚିତ
ତଥାପି ବିବେକ ବିହୀନ ହୋଇ ମୁଁ ପ୍ରୟାସ କି ନ କଲି ତ
ଧନ ମଦୋନ୍ମତ୍ତ ନୃପଙ୍କ ହୃଦୟ ଦୁର୍ଜନ ସମୀପେ ବସି
ଲଜ୍ଜାତେଜି ନିଜ ଗୁଣ ପ୍ରଶଂସିଲି ଅରଜି ପାତକ ରାଶି । ୩୪ ।

## କାଳ ମହିମା

ଭ୍ରାତ ଦୁଃଖ ହୁଏ କାହାନ୍ତି ସାମନ୍ତ ବେଷ୍ଟିତ ସେ ନରପତି
କାହିଁ ରାଜପରିଷଦ, କାହାନ୍ତି ସେ ଚନ୍ଦ୍ରାନନା ବଧୂ ପନ୍ତି
କାହାନ୍ତି ସେ ଦର୍ପୀ ରାଜପୁତ୍ରଗଣ, ଗାନରତ ବନ୍ଦୀବାର
ସର୍ବେ ଯେଉଁ କାଳ ସ୍ମୃତିଗର୍ଭେ ଲୀନ, ତାହାକୁ ମୋ ନମସ୍କାର ।୩୫।

ଜାତ ହେଲି ଯାହା ସଙ୍ଗେ କେତେବହୁଁ ସେ ଗୁଡ଼ି ଗଲେଣି ଏ ମହୀ
ବଢ଼ିଲି ଯା ସହ ସେମାନେ ବି ସ୍ମୃତିପଥେ ହଜିଲେଣି କାହିଁ
ଏବେ ତ ମୋହର ଅବସ୍ଥା ଏମନ୍ତ ପତନଉନ୍ମୁଖ ସେ ତ
ବାଲୁକା ବହୁଳ ତଟିନୀର ତୀରତରୁ ସମ ଅନିଶ୍ଚିତ । ୩୬ ।

ଯେଉଁ ଗୃହେ ଥିଲେ ଅନେକ ତହିଁତ ଏକ ହିଁ ଦିଶଇ ସେହୁ
ଯହିଁ ଥିଲେ ବହୁ ତହିଁ ଦିଶେ ଏକ, ତାହା ବି ନ ଦିଶେ ଆଜି
ସେମାନଙ୍କୁ ନେଇ ରଜନୀ ଦିବସ ଅକ୍ଷକ୍ରୀଡ଼ାକରେ କାଳ
କାଳ କଳାକାର କାଳ ରାଜିରେ ସେ ପ୍ରାଣ ନେଇ ଖେଳେ ଖେଳ । ୩୭।

ନିମିଷେକ ଆୟୁ ନ ଜାଣଇ ନର କି କର୍ମ କରିବ ସେ ବା
ସୁରନଦୀତଟରେ କୁଟୀରେ ନ ବସି ତପସ୍ୟା କରିବ ଅବା
ଅବା ଗୁଣବତୀ ସ୍ୱନାରୀ ସଙ୍ଗତେ ବିହରିବ ସୁଖେ ରହି
କିବା ଶାସ୍ତ୍ର କାବ୍ୟାମୃତ ପାନେ ଦିନ ଯାପିବ ନ ଜାଣେ ସେହି । ୩୮ ।

ଗଙ୍ଗାତୀରେ ହିମଗିରି ଶିଳାବଦ୍ଧ ପଦ୍ମାସନସ୍ୟ
ବ୍ରହ୍ମଧ୍ୟାନାଭ୍ୟସନବିଧିନା ଯୋଗନିଦ୍ରାଂଗତସ୍ୟ
କିଂ ତୈର୍ଭାବ୍ୟଂ ମମ ସୁଦିବସୈର୍ଯତ୍ର ତେ ନିର୍ବିଶଂକାଃ
ସଂପ୍ରାପ୍ସ୍ୟନ୍ତେ ଜରଠ ହରିଣାଃ ଶୃଙ୍ଗକଣ୍ଡୂବିନୋଦମ୍ । ୩୯ ।

ସ୍ଫୁରତ୍ସ୍ଫାର ଜ୍ୟୋତ୍ସ୍ନା ଧବଳିତତଳେ କ୍ୱାପି ପୁଳିନେ
ସୁଖାସୀନାଃ ଶାନ୍ତଧ୍ୱନିଷୁ ରଜନୀଷୁ ଦ୍ୟୁସରିତଃ
ଭବାଭୋଗୋଦ୍ୱିଗ୍ନା ଶିବଶିବଶିବେତ୍ୟାର୍ତ୍ତ ବଚସା
କଦା ସ୍ୟାମାନନ୍ଦୋଦ୍‌ଗତ ବହୁଳ ବାଷ୍ପପ୍ଲୁତ ଦୃଶା । ୪୦ ।

ମହାଦେବୋ ଦେବଃ ସରିଦପିଚ ସୈଷା ସୁରସରି—
ଦ୍‌ଗୁହା ଏବାଗାରଂ ବସନମପି ତା ଏବ ହରିତଃ
ସୁହୃଦ୍‌ବା କାଲୋଽୟଂ ବ୍ରତମିଦମଦୈନ୍ୟଂ ବ୍ରତମିଦଂ
କିୟଦ୍‌ବା ବକ୍ଷ୍ୟାମୋ ବଟ ବିଟପ ଏବାସ୍ତୁ ଦୟିତା । ୪୧ ।

ଶିରଃ ଶାର୍ବଂ ସ୍ୱର୍ଗାତ୍ପଶୁପତି ଶିରସ୍ତଃ କ୍ଷିତିଧରଂ
ମହୀଧ୍ରାଦୁତ୍ତୁଙ୍ଗାଦବନିମବନେଶ୍ଚାପି ଜଳଧିମ୍
ଅଧୋ ଗଙ୍ଗାସେୟଂ ପଦମୁପଗତା ସ୍ତୋକମଥବା
ବିବେକ ଭ୍ରଷ୍ଟାନାଂ ଭବତି ବିନିପାତଃ ଶତମୁଖଃ । ୪୨ ।

ଆଶା ନାମ ନଦୀ ମନୋରଥ ଜଳା ତୃଷ୍ଣା ତରଙ୍ଗାକୁଳା
ରାଗ ଗ୍ରାହବତୀ ବିତର୍କ ବିହଗା ଧୈର୍ଯ୍ୟଦ୍ରୁମଧ୍ୱଂସିନୀ
ମୋହାବର୍ତ୍ତସୁଦୁସ୍ତରାଽତି ଗହନା ପ୍ରୋତ୍ତୁଙ୍ଗ ଚିନ୍ତାତଟୀ
ତସ୍ୟାଃ ପାରଗତା ବିଶୁଦ୍ଧମନସୋ ନନ୍ଦନ୍ତି ଯୋଗୀଶ୍ୱରାଃ । ୪୩ ।

ଆସଂସାରଂ ତ୍ରିଭୁବନମିଦଂ ଚିନ୍ୱତାଂ ତାତ ତାଦୃଙ୍
ନୈବାସ୍ମାକଂ ନୟନପଦବୀଂ ଶ୍ରୋତ୍ରବର୍ତ୍ମାଗତୋ ବା—
ଯୋଽୟଂ ଧତ୍ତେ ବିଷୟକରିଣୀ ଗାଢଗୂଢାଭିମାନ—
କ୍ଷୀବସ୍ୟାନ୍ତଃ କରଣ କରିଣଃ ସଂଯମାଳାନ ଲୀଳାମ୍ । ୪୪ ।

ଭାଗୀରଥି ତଟରେ ହିମଗିରି ଶିଳାପରେ ପଦ୍ମାସନେ ଥିବି
ବ୍ରହ୍ମଧ୍ୟାନମଗ୍ନ ହୋଇ ମୁଁ ବିଧିରେ ଯୋଗନିଦ୍ରାଗତ ହେବି
ଏମନ୍ତ ସୁଦିନ ଆସିବ କି ଭାଗ୍ୟେ ଯେବେ ସେ ଜରଠ ମୃଗ
ନିଃଶଙ୍କ ହୃଦୟେ କଣ୍ଡୂନିବାରଣେ ଘଷିବେ ମୋ ଦେହେ ଶୃଙ୍ଗ । ୩୯ ।

ଜ୍ୟୋତ୍ସ୍ନାବିଚ୍ଛୁରିତ ଧବଳ ପ୍ରଶାନ୍ତ ନିଃଶବ୍ଦ ରଜନୀ କୋଳେ
ସୁଖ ଉଦ୍‌ବେଳିତ ମାନସେ ବସି ସେ ସୁରନଦୀ ପୁଳିନରେ
ଭବ ଭୋଗରକ୍ତ ଆର୍ତ୍ତସ୍ୱରେ ଶିବ ଶିବ ଶିବ ବାରମ୍ବାର
ଘୋଷୁଥିବି ତହିଁ ଗଦ୍‌ଗଦ୍‌ ସ୍ୱରେ, ହେବ କିଏ ଭାଗ୍ୟ ମୋର । ୪୦ ।

ମହାଦେବ ଏକମାତ୍ର ଦେବ, ନଦୀ ଗଙ୍ଗା ତହୁଁ ନାହିଁ ଆନ
ଗୃହ ଗିରିଗୁହା, ବସନ କେବଳ ଅମ୍ବରହିଁ ସର୍ବୋତ୍ତମ
କାଳହିଁ ତ ମିତ୍ର, ଅନ୍ୟ ପାଶେ ଦୈନ୍ୟ ନହେବାହିଁ ମହାବ୍ରତ
କି କହିବା ବଟ ବିଟପ ହିଁ ଆମ୍ଭ ପ୍ରିୟ ପ୍ରଣୟିନୀ ସେ ତ । ୪୧ ।

ସ୍ୱର୍ଗପୁରୁ ଗଙ୍ଗା ଶିବଶିରେ ଆସି ପଡ଼ିଲେ ଭୂଧର ଶିରେ
ତହୁଁ ସେ କ୍ଷିତିରେ ଶତଭିନ୍ନଧାରେ ମିଶିଲେ ଜଳଧି ନୀରେ
ଉଚ୍ଚଲୋକୁ ଆସି ଅବନୀରେ ହେଲେ କ୍ଷୀର ବାରିଧିରେ ଲୀନ
ନିମ୍ନଗାମୀ ହୋଇ ନାଶଯାଏ ତଥା ବିବେକ ହାରିଲେ ଜନ । ୪୨ ।

ଆଶା ମହାନଦୀ. ମନୋରଥ ଜଳ, ତୃଷ୍ଣା ତରଙ୍ଗ ସଙ୍କୁଳ
ଆସକ୍ତି ମଗର, ବିତର୍କ ବିହଙ୍ଗ, ଆବର ମୋହ ଦୁସ୍ତର
ଧୈର୍ଯ୍ୟଦ୍ରୁମଧ୍ୱଂସୀ ଗହନ ଉତ୍ତୁଙ୍ଗ ଚିନ୍ତା ତଟଭୂମି ତାର
ପାର ହୋଇ ତାରେ ବିଶୁଦ୍ଧମାନସ ସୁଖୀ ସଦା ଯୋଗୀଶ୍ୱର । ୪୩ ।

ଆସଂସାର ତିନି ଭୁବନେ ହେ ତାତ ଖୋଜିଲି ଯେତେ ମୁଁ ଯହିଁ
ନଦେଖିଲି ନେତ୍ରେ ନଶୁଣିଲି କର୍ଣ୍ଣେ ଏପରି କାହାରେ କାହିଁ
ବିଷୟକରିଣୀ ଆରୋହଣ ଅଭିମାନ ମଦେ ମତ୍ତ ମନ
ତା ହୃଦୟୁ ମତ୍ତମାତଙ୍ଗ ସ୍ୱବଶେ ରଖିବାରେ ଯେହୁ କ୍ଷମ । ୪୪ ।

## ନିର୍ବେଦତା ସ୍ୱରୂପ

ଯେ ବର୍ଦ୍ଧଂତେ ଧନପତିପୁରଃ ପ୍ରାର୍ଥନା ଦୁଃଖଭାଜୋ
ଯେ ଚାଲ୍ପତ୍ୱଂ ଦଧତି ବିଷୟାକ୍ଷେପ ପର୍ଯ୍ୟସ୍ତବୁଦ୍ଧେଃ
ତେଷାମନ୍ତଃ ସ୍ଫୁରିତ ହସିତଂ ବାସରାଣାଂ ସ୍ମରେୟଂ
ଧ୍ୟାନଚ୍ଛେଦେ ଶିଖରିକୁହର ଗ୍ରାବଶଯ୍ୟା ନିଷଣ୍ଣଃ । ୪୫ ।

ବିଦ୍ୟାନାଧିଗତା କଳଂକରହିତା ବିତ୍ତଂ ଚ ନୋପାର୍ଜ୍ଜିତଂ
ଶୁଶ୍ରୂଷାପି ସମାହିତେନ ମନସା ପିତ୍ରୋର୍ନ ସଂପାଦିତା
ଆଲୋଲ ଯତଲୋଚନା ଯୁବତୟଃ ସ୍ୱପ୍ନେପି ନାଲିଙ୍ଗିତାଃ
କାଳୋୟଂ ପରିପିଣ୍ଡଲୋଲୁପତୟା କାକୈରିବ ପ୍ରେରିତଃ । ୪୬ ।

ବିତୀର୍ଣ୍ଣେ ସର୍ବସ୍ୱେ ତରୁଣକରୁଣା ପୂର୍ଣ୍ଣ ହୃଦୟା
ସ୍ମରନ୍ତଃ ସଂସାରେ ବିଗୁଣପରିଣାମାବଧିଗତୀଃ
ବୟଂ ପୁଣ୍ୟାରଣ୍ୟେ ପରିଣତଶରଚ୍ଚନ୍ଦ୍ରକିରଣୈ—
ସ୍ତ୍ରିୟାମାଂ ନେଷ୍ୟାମୋ ହରଚରଣଚିନ୍ତୈକଶରଣଃ । ୪୭ ।

ବୟମିହ ପରିତୁଷ୍ଟା ବଲ୍କଲୈସ୍ତ୍ୱଂ ଚ ଲକ୍ଷ୍ମ୍ୟା
ସମ ଇହ ପରିତୋଷୋ ନିର୍ବିଶେଷୋ ବିଶେଷଃ
ସ ତୁ ଭବତି ଦରିଦ୍ରୋ ଯସ୍ୟ ତୃଷ୍ଣା ବିଶାଳା
ମନସି ଚ ପରିତୁଷ୍ଟେ କୋଽର୍ଥବାନ୍ କୋ ଦରିଦ୍ରଃ । ୪୮ ।

ଯଦେତତ୍ ସ୍ୱଚ୍ଛନ୍ଦଂ ବିହରଣମକାର୍ପଣ୍ୟମଶନଂ
ସହାର୍ଯ୍ୟୈଃ ସଂବାସଃ ଶ୍ରୁତମୁପଶମୈକବ୍ରତଫଳମ୍
ମନୋ ମନ୍ଦସ୍ପନ୍ଦଂ ବହିରପି ଚିରସ୍ୟାପି ବିମୃଶ—
ନ ଜାନେ କସ୍ୟୈଷା ପରିଣତିରୁଦାରସ୍ୟ ତପସଃ । ୪୯ ।

ପାଣିଃ ପାତ୍ରଂ ପବିତ୍ରଂ ଭ୍ରମଣପରିଗତଂ ଭୈକ୍ଷମକ୍ଷୟ୍ୟମନ୍ନଂ
ବିସ୍ତୀର୍ଣ୍ଣଂ ବସ୍ତ୍ରମାଶାସୁଦଶକମମଳଂ ତଳ୍ପମସ୍ୱଳ୍ପମୁର୍ବୀ
ଯେଷାଂ ନିଃସଙ୍ଗତାଙ୍ଗୀକରଣ ପରିଣତାଃ ସ୍ୱାତ୍ମସଂତୋଷିଣସ୍ତେ
ଧନ୍ୟାଃ ସଂନ୍ୟସ୍ତଦୈନ୍ୟବ୍ୟତିକରନିକରାଃ କର୍ମ ନିର୍ମୂଳୟନ୍ତି । ୫୦ ।

# ନିର୍ବେଦତା ସ୍ୱରୂପ

ଜନପଦ ପୁରେ ପ୍ରାର୍ଥନା ବେଳର ଦୁଃଖେ ସୁଖାଧିଦନ
ବିଷଯ୍ବିରତ ପୁରୁଷେ ପ୍ରଶାନ୍ତ କ୍ଷୀଣାୟୁ ଦିବସ ମାନ
ଶିଖରୀ ଗୁହାରେ ଶିଳାଖଣ୍ଡ ପରେ ଧ୍ୟାନମଗ୍ନ ଅଛି ମୋରେ
ଧ୍ୟାନଶେଷେ ସେହି ବାସରଗୁଡିକ କଥାସ୍ମରି ହସ ମାତେ । ୪୫ ।

ଅକଳଙ୍କ ବିଦ୍ୟା ଅନଭିଜ୍ଞ, ନୁହେଁ ଧନ ଉପାର୍ଜନେ କ୍ଷମ
ନିଶ୍ଚଳ ମାନସେ ପିତାମାତାଙ୍କର ସେବାରେ ଯାପିନି ଦିନ
ଆଲୋଳ ନୟନା ଯୁବତୀରେ ସ୍ୱପ୍ନେ ବକ୍ଷେ ଧରିନାହିଁ ଥରେ
ପରାନ୍ନେ ଉଦରଭରଣେ ସେ ଆସେ କାକପରି ଏ ସଂସାରେ । ୪୬ ।

ବିତରଣ କରି ସର୍ବସ୍ୱ ହୃଦୟେ ତରୁଣ କରୁଣା ଭରି
ସଂସାରର ସବୁ ଦ୍ରବ୍ୟ ଅବଗୁଣ ନିହିତ ଏ କଥା ସ୍ମରି
ପୁଣ୍ୟ ଅରଣ୍ୟରେ ସଂପୂର୍ଣ୍ଣ ଶରଦ ଚନ୍ଦ୍ରକିରଣରେ ବସି
ଶିବ ପଦେ ଚିତ୍ତ ଏକାନ୍ତେ ନିବେଶି ଶରଣେ ଯାପିବି ନିଶି । ୪୭ ।

ଆମ୍ଭେ ପରିତୁଷ୍ଟ ବଳ୍କଳ ବସନେ, ତୁମେ ହେଲେ ଧନାଗମ
ସଂତୋଷରେ ଆମ୍ଭେ ଉଭୟେ ସମାନ ତୋଷ ଅବଶେଷ ହୀନ
ଦରିଦ୍ର୍ୟସେନର ସଂସାରରେ ତୃଷ୍ଣା ଅତି ହିଁ ବିଶାଳ ଯାର
ମନ ଯଦି ପରିତୁଷ୍ଟ ତେବେ କିଏ ଦରିଦ୍ର କେ ବା କୁବେର । ୪୮ ।

ସ୍ୱଚ୍ଛନ୍ଦ ବିହାର, ଆପଣା ରୁଚିର ପ୍ରଚୁର ଭୋଜନ ପୁଣ
ମନୋଗୃହ ସହବାସ, ଶାନ୍ତିଦାୟୀ ଶାସ୍ତ୍ରଶାସ୍ତ୍ରପାରାୟଣ
ବିଦେଶରେ ହେଲେ ତା ମନ ଭାବନା କର୍ତ୍ତବ୍ୟରୁ ନୁହେ ଚ୍ୟୁତ
ନ ଜାଣେ ସେ କେଉଁ ଉଦାରପୁରୁଷ ତପସ୍ୟାର ଫଳ ଏ ତ । ୪୯ ।

ହସ୍ତେ ପୁଣ୍ୟ ପାତ୍ର, ଭିକ୍ଷାନ୍ନ ଭୋଜନ, ଭ୍ରମଣ ହିଁ ବ୍ରତ ଚିର
ବିସ୍ତୀର୍ଣ୍ଣ ବସନ ଶୁଭ୍ର ଦଶ ଦିଶ, ଶଯ୍ୟା ସ୍ୱଳ୍ପ ଧରାତଳ
ନିଃସଙ୍ଗ ଜୀବନ ବରି ନେଇଛନ୍ତି ଯେ ଆତ୍ମାରେ ସନ୍ତୋଷ ନିତି
ଧନ୍ୟ ସେହି ଦୈନ୍ୟ ବିବର୍ଜିତ ପୁଣ୍ୟ ନିର୍ମୂଳ କର୍ମ ସେ ଯତି । ୫୦ ।

ଦୁରାରାଧଃ ସ୍ୱାମୀ ତୁରଗଚଲଚିତ୍ତା କ୍ଷିତିଭୁଜୋ
ବୟଂ ତୁ ସ୍ଥୂଲେଚ୍ଛା ମହତି ଚ ପଦେ ବଦ୍ଧମନସଃ
ଜରାଦେହଂ ମୃତ୍ୟୁର୍ହରତି ସକଳଂ ଜୀବିତମିଦଂ
ସଖେ ନାନ୍ୟଚ୍ଛ୍ରେୟୋ ଜଗତି ବିଦୁଷୋଽନ୍ୟତ୍ର ତପସଃ । ୫୧ ।

ଭୋଗା ମେଘବିତାନମଧ୍ୟ ବିଲାସତ୍ସୌଦାମିନୀଚଂଚଳା
ଆୟୁର୍ବାୟୁବିଘଟ୍ଟିତାଭ୍ରପଟଲୀଲୀନାମ୍ବୁବଦ୍‌ଭଙ୍ଗୁରମ୍
ଲୋଲାଯୌବନଲାଲସା ତନୁଭୃତାମିତ୍ୟାକଲଯ୍ୟ ଦ୍ରୁତଂ
ଯୋଗେ ଧୈର୍ଯ୍ୟସମାଧିସିଦ୍ଧିସୁଲଭେ ବୁଦ୍ଧିଂ ବିଦଦ୍ଧଂ ବୁଧାଃ । ୫୨ ।

ପୂର୍ଣ୍ଣେ ଗ୍ରାମେ ବନେ ବା ମହତି ସିତପଟଚ୍ଛିନ୍ନପାଳୀଂ କପାଳୀ—
ମାଦାୟ ନ୍ୟାୟଗର୍ଭ ଦ୍ୱିଜମୁଖହୁତଭୁଗ୍‌ଭୂମା ଧୂମ୍ରୋପାକଂଠମ୍
ଦ୍ୱାରଂ ଦ୍ୱାରଂ ପ୍ରବିଷ୍ଟୋ ବରମୁଦରଦରୀପୂରଣାୟ କ୍ଷୁଧାର୍ତ୍ତୋ
ମାନୀ ପ୍ରାଣୀ ସଧନ୍ୟୋନପୁନରନୁଦିନଂ ତୁଲ୍ୟ କୁଲ୍ୟେଷୁ ଦୀନଃ । ୫୩ ।

ଚଣ୍ଡାଳଃ କିମୟଂ ଦ୍ୱିଜାତିରଥବା ଶୂଦ୍ରୋଥକିଂ ତାପସଃ
କିମ୍ବା ତତ୍ତ୍ୱନିବେଶପେଶଳମତିର୍ଯୋଗୀଶ୍ୱରଃ କୋଽପି କିମ୍
ଇତ୍ୟୁତ୍ପନ୍ନ ବିକଳ୍ପଜଳ୍ପମୁଖରୈ ରାଭାଷ୍ୟମାଣା ଜନୈ—
ର୍ନକ୍ରୁଦ୍ଧାଃ ପଥିନୈବ ତୁଷ୍ଟମନସୋ ଯାନ୍ତି ସ୍ୱୟଂ ଯୋଗିନଃ । ୫୪ ।

ସଖେ ଧନ୍ୟାଃ କେଚିତ୍ତ୍ରୁଟିତ ଭବବନ୍ଧବ୍ୟତିକରା
ବନାନ୍ତେ ଚିତ୍ତାନ୍ତର୍ବିଷମବିଷୟାଶୀବିଷଗତାଃ
ଶରଚ୍ଚନ୍ଦ୍ରଜ୍ୟୋତ୍ସ୍ନା ଧବଳଗଗନାଭୋଗସୁଭଗାଂ
ନୟନ୍ତେ ଯେ ରାତ୍ରିଂ ସୁକୃତଚୟଚିତ୍ତୈକଶରଣାଃ । ୫୫ ।

ଏତସ୍ମାଦ୍‌ବିରମେନ୍ଦ୍ରିୟାର୍ଥଗହନାଦାୟାସକାଦାଶ୍ରୟ
ଶ୍ରେୟୋମାର୍ଗମଶେଷଦୁଃଖଶମନ ବ୍ୟାପାରଦକ୍ଷଂ କ୍ଷଣାତ୍
ଶାନ୍ତଂ ଭାବମୁପୈହି ସନ୍ତ୍ୟଜ ନିଜାଂ କଲ୍ଲୋଲଲୋଲାଂ ଗତିଂ
ମା ଭୂୟୋ ଭଜ-ଭଙ୍ଗୁରାଂ ଭବରତିଂ ଚେତଃ ପ୍ରସୀଦାଧୁନା । ୫୬ ।

ଚଞ୍ଚଳ ତୁରଙ୍ଗସମ ନୃପମନ ସ୍ୱାମୀସେବା ସୁକଠିନ
ଅଭିଳାଷ ଆମ୍ଭ ସୁମହତ ମୁକ୍ତିପଦେ ନିଯୋଜିତ ମନ
ଜରାଜୀର୍ଣ୍ଣତନୁ ମୃତ୍ୟୁ ସେ ତ ସର୍ବଜୀବନ କରେ ହରଣ
ସଖେ, ଜ୍ଞାନୀଜନ ପାଇଁ ତପବନେ ନାହିଁ ଶ୍ରେୟ କିଛି ଆନ । ୫୧ ।

ଭୋଗ ସେଂତ ମେଘଘଟାନେ ଚଞ୍ଚଳା ଦାମିନୀସମ ଅସ୍ଥିର
ଆୟୁ ବାୟୁବିତାଡ଼ିତ ମେଘୋଲ୍ଲିନ ସଲିଳ ସମ ଭଙ୍ଗୁର
ଚପଳ ଯୌବନ ଲଳନ୍ତ ଏତନୁ ନୁହଇ ତ ଜାଣି ସ୍ଥିର
ବିଜ୍ଞଜନେ, ଧୀରମନେ ସମାଧିରେ ସିଦ୍ଧି ପାଇଁ ଯତ୍ନକର । ୫୨ ।

ବେଦଜ୍ଞ ବ୍ରାହ୍ମଣକୃତ ବହ୍ନି ଧୂମାବୃତ ଧାମେ ଦ୍ୱାର ଦ୍ୱାର
ଶୁଭ୍ରବସ୍ତ୍ରାବୃତ କପାଳ କହେ ଯେ ଅଭିମାନୀ କ୍ଷୁଧାତୁର
ଉଦର ଭରଣ ପାଇଁ ଭ୍ରମେ ଗ୍ରାମେ ଅବା ବନେ ସେହୁ ଧନ୍ୟ
ନିଜକୁଳ କାମ୍ୟା ସ୍ୱଜନ ଗହଣେ ନପ୍ରକାଶି ତାର ଦୈନ୍ୟ । ୫୩ ।

ଯୋଗୀ ଚଳେ ପଥେ ନିରୁଦ୍‌ବିଗ୍ନମନେ କେ କହେ ଚଣ୍ଡାଳ ତାରେ
କେହୁ କହେ ଦ୍ୱିଜ, ଶୂଦ୍ରକେ କହଇ ତାପସ କେ ଭକ୍ତିଭରେ
କେ ପୁଣି କହେ ସେ ତତ୍ତ୍ୱଜ୍ଞାନେ ମତ୍ତ ନିଷ୍କଳ ଏ ଯୋଗୀଶ୍ୱର
ବିକଳ୍ପ ମୂଖର ମହାଜନ ଶ୍ରୋତେ ମୁନସ୍ନୁଲେ ନିର୍ବିକାର । ୫୪ ।

ସଖେ ସେହି ଧନ୍ୟ, ଦୂଷିତ ଏ ଭବବନ୍ଧନରୁ ଯେହୁ ମୁକ୍ତ
ବିଷମବିଷୟ ଆଶୀବିଷ ଯାର ଅନ୍ତରରୁ ଅପଗତ
ଶରଚ୍ଚନ୍ଦ୍ର ଜ୍ୟୋତ୍ସ୍ନା ଧବଳିତ ନଭ ସୁଭଗକାନନ ପ୍ରାନ୍ତେ
ଯାପଇ ଯାମିନୀ, ପୁଣ୍ୟପୁଞ୍ଜଯାର ଆଶ୍ରିତ ଆପଣା ଚିତ୍ତେ । ୫୫ ।

ଆରେ ଚିତ୍ତ ମୋର ଶାଂତହୁଅ ଆଜ କୁତ୍ସିତ ଆଶ୍ରୟ ତୋର
ଇନ୍ଦ୍ରିୟ ସୁଖର ଅରଣ୍ୟେ ନବୁଲ, ଶ୍ରେୟମାର୍ଗ ଆଶ୍ରାକର
କ୍ଷଣକେ ଅଶେଷ ଦୁଃଖର ବିନାଶ କ୍ଷମ ତୁହି; ଏ ଭଙ୍ଗୁର
ଭବପ୍ରୀତି ତେଜ, ଶାଂତଭାବ ଭଜ, ଚପଳତା ତ୍ୟାଗକର । ୫୬ ।

ପୁଣ୍ୟେ ମୂଲ ଫଲୈଃ ପ୍ରିୟେ ପ୍ରଣୟିନୀ ପ୍ରୀତିଂ କୁରୁଷ୍ୱାଧୁନା
ଭୂଶଯ୍ୟାନବବଲ୍କଲୈରକରୁଣୈରୁତ୍ତିଷ୍ଠ ଯାମୋ ବନମ୍
କ୍ଷୁଦ୍ରାଣାମବିବେକମୂଢମନସାଂ ଯତ୍ରେଶ୍ୱରାଣାଂ ସଦା
ବିତ୍ତବ୍ୟାଧ୍ୟ ବିବେକ ବିହ୍ୱଲଗିରାଂ ନାମାପି ନ ଶ୍ରୂୟତେ । ୫୭ ।

ମୋହଂ ମାର୍ଜୟତାମୁପାର୍ଜୟ ରତିଂ ଚନ୍ଦ୍ରାର୍ଧଚୂଡାମଣୌ
ଚେତଃ ସ୍ୱର୍ଗତରଂଗିଣୀତଟଭୂବାମାସଂଗମଂଗୀ କୁରୁ
କୋ ବା ବୀଚିଷୁ ବୁଦ୍‌ବୁଦେଷୁ ଚ ତଡଲ୍ଲେଖାସୁ ଚ ସ୍ତ୍ରୀଷୁ ଚ—
ଜ୍ୱାଲାଗ୍ରେଷୁ ଚ ପନ୍ନଗେଷୁ ଚ ସରିଦ୍‌ବେଗେଷୁ ଚ ପ୍ରତ୍ୟୟଃ । ୫୮ ।

ଅଗ୍ରେଗୀତଂ ସରସକବୟଃ ପାର୍ଶ୍ୱତୋ ଦକ୍ଷିଣାତ୍ୟଃ
ପୃଷ୍ଠେ ଲୀଳାବଳୟରଣିତଶ୍ଚାମର ଗ୍ରାହିଣୀନାମ୍
ଯଦ୍ୟସ୍ତ୍ୟେବଂ କୁରୁ ଭବରସା ସ୍ୱାଦନେ ଲଂପଟତ୍ୱଂ
ନୋଚେଚ୍ଚେତଃ ପ୍ରବିଶ ସହସା ନିର୍ବିକଲ୍ପେ ସମାଧୌ । ୫୯ ।

ବିରମତ ବୁଧା ଯୋଷିତ୍ସଙ୍ଗାତ୍ସୁଖାତ୍ କ୍ଷଣଭଂଗୁରା—
ତ୍ କୁରୁତ କରୁଣାମୈତ୍ରୀପ୍ରଜ୍ଞାବଧୂଜନସଂଗମମ୍
ନ ଖଲୁ ନରକେ ହାରାକ୍ରାନ୍ତଂ ଘନସ୍ତନମଣ୍ଡଳଂ
ଶରଣମଥବା ଶ୍ରୋଣିବିମ୍ବଂ ରଣନ୍ମଣିମେଖଲମ୍ । ୬୦ ।

ମାତର୍ଲକ୍ଷ୍ମି ଭଜସ୍ୱ କଂଚିଦପରଂ ମତ୍କାଂକ୍ଷିଣୀ ମାସ୍ମଭୂ—
ର୍ଭୋଗେଭ୍ୟଃ ସ୍ପୃହୟାଳବୋ ନହି ବୟଂ କାନିଃସ୍ପୃହାଣାମସି
ସଦ୍ୟଃ ସ୍ୟୂତପଲାଶପତ୍ରପୁଟିକାପାତ୍ରେ ପବିତ୍ରୀକୃତେ
ଭିକ୍ଷା ସକ୍ତୁଭିରେବ ସଂପ୍ରତି ବୟଂ ବୃତ୍ତିଂ ସମୀହାମହେ । ୬୧ ।

ଯୂୟଂ ବୟଂ ଯୂୟମିତ୍ୟାସୀନ୍ମତିରାବୟୋଃ
କିଂ ଜାତମଧୁନା ଯେନ ଯୂୟଂ ଯୂୟଂ ବୟଂ ବୟଂ । ୬୨ ।

ରମ୍ୟଂ ହର୍ମ୍ୟତଳଂ ନ କିଂ ବସତୟେ ଶ୍ରାବ୍ୟଂ ନ ଗେୟାଦିକଂ
କିଂବା ପ୍ରାଣସମାସମାଗମସୁଖଂ ନୈବାଧିକଂ ପ୍ରୀତୟେ
କିଂ ତଦ୍‌ଭ୍ରାନ୍ତ ପତତ୍ପତଙ୍ଗ ପବନବ୍ୟାଲୋଳ ଦୀପାଙ୍କୁର—
ଚ୍ଛାୟାଚଂଚଳମାକଳଯ୍ୟ ସକଳଂ ସନ୍ତୋ ବନାନ୍ତଂ ଗତାଃ । ୬୩ ।

ହେ ମୋର ପ୍ରେୟସୀବୃନ୍ଦି, ଉଠଯିବା ସୁଦୂର ଅରଣ୍ୟ ଧାମେ
ପ୍ରୀତିକର ଏବେ ଫଳମୂଳ, ଭୂମିଶଯ୍ୟା ବଳ୍କଳ ବସନେ
ଅବିବେକ ମୂଢ଼ମତି କ୍ଷୁଦ୍ର ଜନ ଧନମଦେ ବ୍ୟାଧିଗ୍ରସ୍ତ
ଉଦ୍ଧତ ବିହ୍ୱଳ ବାଣୀ ଯାର ଯହିଁ କେବେ ନୁହେ ଶ୍ରୁତିଗତ । ୫୭ ।

ଦୂରକର ମୋହ କର ତୁ ଆଶ୍ରୟ ଅର୍ଦ୍ଧଚନ୍ଦ୍ର ଚୂଡ଼ାମଣି
ଆରେ ମୋର ଚିତ୍ତ, ବସ ଯାଇ ସୁଖେ ସୁର ନଦୀ ତଟ ଭୂମି
ତରଙ୍ଗ, ବୁଦ୍‌ବୁଦ୍, କାମିନୀ, ଦାମିନୀ, ବହ୍ନି ଶିଖା ତରଙ୍ଗିଣୀ
ଭୁଜଙ୍ଗେ କି ଅବା ପ୍ରତ୍ୟୟ, ତେମନ୍ତେ ଅନସ୍ଥିତ ପ୍ରାଣ ଜାଣି । ୫୮ ।

ସମ୍ମୁଖେ ସଙ୍ଗୀତ ଦାକ୍ଷିଣାତ୍ୟ କବି ରସିକ ଉଭୟ ପାଶେ
ଚାମର ଧାରିଣୀ ଲୀଳା ବିଳାସିନୀ ତରୁଣୀ ସେ ପୃଷ୍ଠଦେଶେ
ଏମନ୍ତ ସୁଭାଗ୍ୟ ଯଦି ଲଭ୍ୟ ତୋରେ ଭବଭୋଗେ ହୁଅ ରତ
ନ ହେଲେ ତୁ ସବୁ ତେଜି ନିର୍ବିକଳ୍ପ ସମାଧିରେ ହୁଅ ସ୍ଥିତ । ୫୯ ।

ବୁଧ ଜନେ ! କ୍ଷଣ ଭଂଗୁର ଏ ଯୋଷା ସଂଗ ସୁଖ ପରିହର
କରୁଣା ମଇତ୍ରୀ ପ୍ରଜ୍ଞା ବଧୂଜନ ସଂଗତେ ସଂଗମ କର
ନରକେ ନମିଳେ ଶରଣ କଦାଚ ଘନସ୍ତନ ମଣ୍ଡଳରେ
ଅବା ମଣିମୟ ମେଖଳାରଣିତ ତରୁଣୀର ନିତମ୍ବରେ । ୬୦ ।

ମାତ ଲକ୍ଷ୍ମୀ ଏବେ ଆନ କାରେ ଭଜ ନ ହୁଅ ମୋ ଆକାଂକ୍ଷିଣୀ
ଭୋଗରେ ଆଜ ମୋ ସ୍ପୃହା ନାହିଁ ତୋର କି ହେବ ନିସ୍ପୃହ ପ୍ରାଣୀ
ସଂପ୍ରତି ପବିତ୍ର ପଲାଶ ପତ୍ରର ପୁଟିକାରେ ଭିକ୍ଷା ଅନ୍ନ
ଯାଚନା କରିବା ବୃତ୍ତି ମାଗୋ କରି ନେଇଛୁ ଏ ଦୀନଜନ । ୬୧ ।

ହେ ମିତ୍ର ପୂର୍ବେ ତ ଭାବୁଥିଲେ ଆମେ ତୁମେ ମୁହିଁ, ମୁହିଁ ତୁମେ
କି ହେଲା ଅଧୁନା କି ପାଇଁ ଭାବୁଛେ ମୁହିଁ ମୁହିଁ, ତୁମେ ତୁମେ । ୬୨ ।

ନ ମିଳେ କି ରମ୍ୟ ପ୍ରାସାଦରେ ବାସ, ଶ୍ରବଣ ଯୋଗ୍ୟ ସଂଗୀତ
କିବା ପ୍ରୀତିପ୍ରଦ ପୂର୍ଣ୍ଣିମା ପ୍ରତିପୂର୍ଣ୍ଣିମା ସହବାସ ଅଯାଚିତ
ତଥାପି ଉଦ୍‌ଭ୍ରାନ୍ତ ପତଙ୍ଗ ପଡ଼ନ୍ତି ଯେଉଁ ବାତ ବିଚଳିତ
ଦୀପଶିଖା ଛାୟା ସମଭିବ ଭବ ବନାନ୍ତେ ଗମନ୍ତି ସନ୍ଥ । ୬୩ ।

ଏକାକୀ ନିସ୍ପୃହଃ ଶାନ୍ତଃ ପାଣିପାତ୍ରୋ ଦିଗମ୍ବରଃ
କଦା ଶମ୍ଭୋ ଭବିଷ୍ୟାମି କର୍ମନିର୍ମୂଳନକ୍ଷମଃ । ୬୪ ।

ଈକିଂ କନ୍ଦାଃ କନ୍ଦରେଭ୍ୟଃ ପ୍ରଳୟମୁପଗତା ନିର୍ଝରା ବା ଗିରିଭ୍ୟ
ପ୍ରଧ୍ୱସ୍ତା ବା ତରୁଭ୍ୟଃ ସରସଫଳଭୃତୋ ବଲ୍କଳିନ୍ୟଶ୍ଚ ଶାଖାଃ
ବୀକ୍ଷ୍ୟନ୍ତେ ଯନ୍ମୁଖାନି ପ୍ରସଭମପଗତ ପ୍ରଶ୍ରୟାଣାଂ ଖଳାନାଂ
ଦୁଃଖୋପାତ୍ତାଲ୍ପବିତ୍ତସ୍ମୟବଶପବନା ନର୍ତ୍ତିତଭ୍ରୂଲତାନି । ୬୫ ।

ଗଂଗା ତରଙ୍ଗକଣଶୀକର ଶୀତଳାନି
ବିଦ୍ୟାଧରାଧ୍ୟୁଷିତ ଚାରୁଶିଳାତଳାନି
ସ୍ଥାନାନି କିଂ ହିମବତଃ ପ୍ରଳୟଂ ଗତାନି
ଯତ୍ସାବମାନ ପରପିଣ୍ଡରତା ମନୁଷ୍ୟାଃ । ୬୬ ।

ଯଦା ମେରୁଃ ଶ୍ରୀମାନ୍ ନିପତତି ଯୁଗାନ୍ତାଗ୍ନିନିହତଃ
ସମୁଦ୍ରାଃ ଶୁଷ୍ୟନ୍ତି ପ୍ରଚୁରମକରଗ୍ରାହନିଳୟାଃ
ଧରା ଗଚ୍ଛତ୍ୟନ୍ତଂ ଧରଣୀଧରପାଦୈରପି ଧୃତା
ଶରୀରେ କା ବାର୍ତ୍ତା କରିକଳଭକର୍ଣ୍ଣାଗ୍ର ଚପଳେ । ୬୭ ।

ପ୍ରାପ୍ତାଃ ଶ୍ରିୟଃ ସକଳକାମଦୁଘାସ୍ତତଃ କିଂ
ଦତ୍ତଂ ପଦଂ ଶିରସି ବିଦ୍ୱିଷତଃ ତତଃ କିମ୍
ସଂମାନିତାଃ ପ୍ରଣୟିନୋ ବିଭବୈସ୍ତତଃ କିଂ
କଳ୍ପଂ ସ୍ଥିତଂ ତନୁଭୃତାଂ ତନୁଭିସ୍ତତଃ କିମ୍ । ୬୮ ।

ଜୀର୍ଣ୍ଣା କନ୍ଥା ତତଃ କିଂ ସିତମମଳପଟଂ ପଟ୍ଟସୂତ୍ରଂ ତତଃ କିଂ
ଏକା ଭାର୍ଯ୍ୟା ତତଃ କିଂ ହୟକରିସୁଗଣୈରାବୃତୋ ବା ତତଃ କିମ୍
ଭକ୍ତଂ ଭୁକ୍ତଂ ତତଃ କିଂ କଦଶନମଥ ବା ବାସରାନ୍ତେ ତତଃ କିଂ
ବ୍ୟକ୍ତଜ୍ୟୋତିର୍ନ ବାଂତର୍ମଥିତ ଭବଭୟଂ ବୈଭବଂ ବା ତତଃ କିମ୍ ।

ଭକ୍ତିର୍ଭବେ ମରଣଜନ୍ମଭୟଂ ହୃଦିସ୍ଥଂ
ସ୍ନେହୋ ନ ବନ୍ଧୁଷୁ ନ ମନ୍ମଥଜା ବିକାରାଃ
ସଂସର୍ଗଦୋଷରହିତା ବିଜନା ବନାନ୍ତା
ବୈରାଗ୍ୟମସ୍ତି କିମତଃ ପରମାର୍ଥନୀୟମ୍ । ୭୦ ।

ଏକାକୀ ନିଷ୍ପୃହ ଭିକ୍ଷା ପାଣି ହସ୍ତ ଶାନ୍ତ ଦିଗମ୍ବର ପୁଣି
କର୍ମ ବନ୍ଧନ ମୋ ନିର୍ମୂଳକ କ୍ଷମ ହେବି କେବେ ଶୂଳପାଣି ।। ୭୪ ।

କନ୍ଦରେ କି କନ୍ଦ ମୂଳ ଲୋପ ହେଲା, ଶୁଖିଲାକି ଗିରିଝର
ରସାଳ ଫଳର ତରୁକି ମଲେଣି, ବଳ୍‌କଳତରୁଶାଖାର
ଦୁର୍ଜନ ଜନର ମୁଖ ନିରେଖିବ ସମ୍ମୁଖରେ ବସି ତାର
କଷ୍ଟାର୍ଜିତ ସ୍ୱଳ୍ପ ଧନ ମୋହ ବାୟୁ ଭରେ ଭ୍ରୂରୁ ନାଚେ ଯାର । ୭୫ ।

ଗଂଗାର ତରଙ୍ଗ ଶିକ୍ତୁରିତ ଜଳକଣିକା ଶୀତଳ ସେ ତ
ଶିଳାମୟ ଗୃହ ପର୍ବତ ପ୍ରଦେଶ ବିଦ୍ୟାଧର ଅଧ୍ୟୁଷିତ
ହିମବନ୍ତର ସେ ସୁବିଶାଳ ଦେଶ ପ୍ରଳୟେ ହେଲାକି ଲୀନ
ଘୋର ଅପମାନ ସହି ନର କପାଁ ପର ଅନ୍ନେ ବିତେ ଦିନ । ୭୬ ।

ଯୁଗାନ୍ତ ବହ୍ନିରେ ହତ ମହାମେରୁ ଯେବେ ନିପତିତ ହେବ
ମହା ଜଳଚର ମଗର ସଂକୁଳ ସିଂଧୁ ଯଦି ଶୁଖିଯିବ
ଧରାଧର ପଦେ ଧୃତ ଏ ଧରଣୀ ଲୋପ ହେବ ଯଦି ସତେ
କରିଶାବକର ଚପଳ କର୍ଣ୍ଣାଗ୍ର ସମ ଏ ଶରୀର କେତେ । ୭୭ ।

ସର୍ବ ମନୋରଥ ପ୍ରଦାୟିନୀ ଲକ୍ଷ୍ମୀ ଲଭିଲେ ତା ପରେ କିସ
ଦୁର୍ଦ୍ଧର୍ମ ଶତ୍ରୁର ମସ୍ତକରେ ପାଦ ରଖିଲେ ବା ହେବ କିସ
ପ୍ରଚୁର ବିଭବେ ବନ୍ଧୁ ମନତୋଷ କଲା ପରେ କିସ ହେବ
ଏହି ତନୁ ଧରି କଳ୍ପଶେଷ ଯାଏ ରହିଲେ ପୁଣି କି ହେବ । ୭୮ ।

ହେଉ ସେ ସୁଜୀର୍ଣ୍ଣ ଛିନ୍ନ ବାସ, ଅବା ବିମଳ ଦୁକୂଳ ସେ ତ
ଏକପତ୍ନୀ ଅବା ବହୁ ନାରୀ କରିତୁରଙ୍ଗମେ ପରିବୃତ
ରୁଚିର ଭୋଜନ ଅବା ଦିବସାନ୍ତେ କୁତ୍ସିତ ଆହାର ଲବ
ଭବ ଭୟହର ଅନ୍ତରର ଜ୍ୟୋତି ଦିନେ ବିଭବ କି ହେବ । ୭୯ ।

ଭକ୍ତି ଶିବପଦେ ଜନମ ମରଣ ଭୟ ହୃଦୟରେ ଥିବ
ବନ୍ଧୁଜନେ ବିନା ଆସକ୍ତି, ମନୋଜ ବିକାର ମନେ ନ ଥିବ
ସଂସର୍ଗ ଦୋଷରୁ ମୁକ୍ତ ବନବାସୀ ନିର୍ଜନେ ସଂତୋଷ ମନେ
ବଇରାଗ୍ୟ ଏଥୁ ବିନାକି ଯାଚନା କରିବି ବିଭୁଚରଣେ । ୭୦।

ତସ୍ମାଦନନ୍ତମଜରଂ ପରମଂ ବିକାସି
ତଦ୍ ବ୍ରହ୍ମ ଚିନ୍ତୟ କିମେଭିରସଦ୍ ବିକଳ୍ପୈଃ
ଯସ୍ୟାନୁଷଙ୍ଗିଣ ଇମେ ଭୁବନାଧିପତ୍ୟ—
ଭୋଗାଦୟଃ କୃପଣଲୋକମତା ଭବନ୍ତି । ୭୧ ।

ପାତାଳ ମାବିଶସି ଯାସି ନଭୋ ବିଲଂଘ୍ୟ
ଦିଂମଣ୍ଡଳଂ ଭ୍ରମସି ମାନସ ଚାପଲେନ
ଭ୍ରାନ୍ତ୍ୟାପି ଜାତୁ ବିମଳଂ କଥମାତ୍ମନୀନଂ
ତଦ୍ ବ୍ରହ୍ମ ନ ସ୍ମରସି ନିର୍ବୃତି ମେଷି ଯେନ । ୭୨ ।

ରାତ୍ରିଃ ସୈବ ପୁନଃ ସ ଏବ ଦିବସୋମତ୍ୱା ମୁଧା ଜନ୍ତବୋ
ଧାବନ୍ତ୍ୟୁଦ୍ୟମିନସ୍ତଥୈବ ନିଭୃତ ପ୍ରାରବ୍ଧ ତତ୍ତତ୍ କ୍ରିୟାଃ
ବ୍ୟାପାରୈଃ ପୁନରୁକ୍ତଭୁକ୍ତବିଷୟୈରେବଂବିଧେନା ମୁନା
ସଂସାରେଣ କଦର୍ଥିତାଃ କଥମହୋ ମୋହାନ୍ନ ଲଜ୍ଜାମହେ । ୭୩ ।

ମହୀରମ୍ୟାଶଯ୍ୟା ବିପୁଲମୁପଧାନଂ ଭୁଜଲତା
ବିତାନଂ ଚାକାଶଂ ବ୍ୟଜନମନୁକୂଲୋଽୟମନିଲଃ
ସ୍ଫୁରଦ୍ଦୀପଶ୍ଚନ୍ଦ୍ରୋ ବିରତି ବନିତାସଙ୍ଗମୁଦିତଃ
ସୁଖଂ ଶାନ୍ତଃ ଶେତେ ମୁନିରତନୁଭୂତିର୍ନୃପଇବ । ୭୪ ।

ତ୍ରୈଲୋକ୍ୟାଧିପତିତ୍ୱମେବ ବିରସଂ ଯସ୍ମିନ୍ମହାଶାସନେ
ତଲ୍ଲବ୍ଧ୍ୱାସନବସ୍ତ୍ରମାନଘଟନେ ଭୋଗେରତିଂ ମା କୃଥାଃ
ଭୋଗଃ କୋପିସ ଏକ ଏବ ପରମୋ ନିତ୍ୟୋଦିତୋ ଜୃମ୍ଭତେ
ଯତ୍ସ୍ୱାଦାଦ୍ ବିରସା ଭବନ୍ତି ବିଷୟାସ୍ତ୍ରୈଲୋକ୍ୟରାଜ୍ୟାଦୟଃ । ୭୫ ।

କିଂ ବେଦୈଃ ସ୍ମୃତିଭିଃ ପୁରାଣପଠନୈଃ ଶାସ୍ତ୍ରୈର୍ମହାବିସ୍ତରୈଃ
ସ୍ୱର୍ଗ୍ରାମକୁଟୀନିବାସଫଳଦୈଃ କର୍ମକ୍ରିୟା ବିଭ୍ରମୈଃ
ମୁକ୍ତ୍ୱୈକଂ ଭବବନ୍ଧଦୁଃଖରଚନା ବିଧ୍ୱଂସ କାଳାନଳଂ
ସ୍ୱାତ୍ମାନନ୍ଦପଦପ୍ରବେଶକଳନଂ ଶେଷା ବଣିଗ୍ ବୃତ୍ତୟଃ । ୭୬ ।

ଅନନ୍ତ ଅଜର ବ୍ରହ୍ମଧ୍ୟାନ କର ଯେ ସୁଖରୁ କଣିକାଏ
ଲଭି ତ୍ରିଭୁବନ ଆଧିପତ୍ୟ ଭୋଗ ତୁଚ୍ଛମଣନ୍ତି ଯୋଗିଏ । ୭୧ ।

ରେ ଚପଳମନ ପାତାଳ ପ୍ରଦେଶେ ଗତିକରୁ; ନଭ ଦେଇ
ଦିଗ ଅନ୍ତରକେ ଭ୍ରମଣ କରୁଛୁ ତଥାପି ବିରାମ ନାହିଁ
ତୋ ଅନ୍ତରସ୍ଥିତ ବିମଳ ସେ ବ୍ରହ୍ମ ଭ୍ରମେହେଲେ ଥରେ ତୁହି
ଧ୍ୟାନକଲୁ ନାହିଁ, ନିବୃତ୍ତି ପଥରେ ଗମନ୍ତି ଯାହାରେ ଧ୍ୟାୟି । ୭୨ ।

ସେହି ରାତ୍ରି ସେହି ଦିବସ ଏ ସତ୍ୟ ଜାଣି ଜାଣି ବୁଧଜନ
ନିଭୃତ ପ୍ରାରବ୍ଧ କର୍ମେ ନିରବଧି ଧାବନ୍ତି କରି ଉଦ୍ୟମ
ବାରଂବାର ସେହି ସେହି କର୍ମେ ପୁଣି ବିଷୟ ବ୍ୟାପାରେ ମଜ୍ଜି
ହଂତସଂତ ହାହା ହୁଅନ୍ତି ସଂସାରେ ନିରଂତର ଲଜ୍ଜାତେଜି । ୭୩ ।

ଧରଣୀ ଯାହାର ରମ୍ୟତଲ୍ପ ବାହୁ ବିପୁଳ ଯା ଉପାଧାନ
ବିତାନ ଆକାଶ, ବ୍ୟଜନଶୀତଳ ଅନୁକୂଳ ସମୀରଣ
ଆଲୋକିତ ଦୀପ ଚନ୍ଦ୍ରମା, ମୁଦିତା ବୈରାଗ୍ୟବନିତା କୋଳେ
ସୁଖେ ଶାଂତମୁନି ଶାୟିତ, ନୃପତି ଭୋଗ ଅନୁଭୂତି ଭରେ । ୭୪ ।

ନୀରସ ତ୍ରିଲୋକ ଆଧିପତ୍ୟ; ଜାତହେଲେ ହୃଦେ ଯେଉଁ ଜ୍ଞାନ
ତା ଲଭି ଆସନେ ବାସେ, ଭୋଗେ, ମାନେ ପ୍ରୀତି ନକର ତୁ ମନ
ସେ ନିତ୍ୟଈଶ୍ୱର ଏକ ପରମାତ୍ମା ଆନ ନାହିଁ ତା ସମାନେ
ତ୍ରିନିଲୋକ ରାଜ୍ୟ ଭୋଗ ବିରସ ଯା ଲବମାତ୍ର ଆଶ୍ୱାଦନେ । ୭୫ ।

ବେଦ ସ୍ମୃତିଶାସ୍ତ୍ର ବିସ୍ତୃତ ପୁରାଣ ପଠନେ ବା ଲଭି କିସ
କର୍ମକାଣ୍ଡ ସବୁ ଭ୍ରମ, ଫଳ ଯାର ସ୍ୱର୍ଗଗ୍ରାମ କୁଟୀବାସ
ବ୍ରହ୍ମାନନ୍ଦ ପଦ ଭବବନ୍ଧ ଦୁଃଖ ବିନାଶନ କାଳାନଳ
ଲଭିବା ପାଇଁ ତା ଯତ୍ନବଚନ ବାକି ବଣିକବୃତ୍ତି କେବଳ । ୭୬ ।

ଆୟୁଃ କଲ୍ଲୋଲଲୋଲଂ କତିପୟଦିବସସ୍ଥାୟିନୀ ଯୌବନଶ୍ରୀ—
ରର୍ଥାଃ ସଙ୍କଳ୍ପକଳ୍ପା ଘନସମୟତଡ଼ିଦ୍‌ବିଭ୍ରମା ଭୋଗପୂରାଃ
କଣ୍ଠାଶ୍ଳେଷୋପଗୂଢ଼ଂ ତଦପି ନ ଚିରଂ ଯତ୍ପ୍ରିୟାଭିଃ ପ୍ରଣୀତଂ
ବ୍ରହ୍ମଣ୍ୟାସକ୍ତଚିତ୍ତା ଭବତ ଭବଭୟାମ୍ଭୋଧିପାରଂ ତରୀତୁମ୍ । ୭୭ ।

ବ୍ରହ୍ମାଣ୍ଡ ମଣ୍ଡଳୀ ମାତ୍ରଂ କିଂ ଲୋଭାୟ ମନସ୍ୱିନଃ
ଶଫସ୍ଫୁରିତେନାବ୍‌ଧେଃ କ୍ଷୁବ୍‌ଧତା ଜାତୁ ଜାୟତେ । ୭୮ ।

ରମ୍ୟାଶ୍ଚନ୍ଦ୍ରମରୀଚୟସ୍ତୃଣବତୀ ରମ୍ୟା ବନାନ୍ତସ୍ଥଳୀ
ରମ୍ୟଃ ସାଧୁସମାଗମଃ ଶମସୁଖଂ କାବ୍ୟେଷୁ ରମ୍ୟାଃ କଥାଃ
କୋପୋପାହିତବାଷ୍ପବିନ୍ଦୁତରଳଂ ରମ୍ୟଂ ପ୍ରିୟାୟା ମୁଖଂ
ସର୍ବଂ ରମ୍ୟମନିତ୍ୟତାମୁପଗତେ ଚିତ୍ତେ ନ କିଂଚିତ୍ପୁନଃ । ୭୯ ।

ଭିକ୍ଷାଶୀ ଜନମଧ୍ୟ ସଂଗରହିତଃ ସ୍ୱାୟତ୍ତଚେଷ୍ଟଃ ସଦା
ଦାନଦାନବିରକ୍ତ ମାର୍ଗନିରତଃ କଶ୍ଚିତ୍ତପସ୍ୱୀ ସ୍ଥିତଃ
ରଥ୍ୟାକ୍ଷୀଣବଶୀର୍ଣ୍ଣବସନୈଃ ସଂପ୍ରାପ୍ତ କଂଥାସଖି—
ର୍ନିର୍ମାନୋ ନିରହଂକୃତିଃ ଶମସୁଖାଭୋଗୈକବଦ୍ଧସ୍ପୃହଃ । ୮୦ ।

ମାତର୍ମେଦିନି ତାତ ମାରୁତ ସଖେ ତେଜଃ ସୁବନ୍ଧୋ ଜଳ
ଭ୍ରାତର୍ବ୍ୟୋମ ନିବଦ୍ଧ ଏଷ ଭବତାମେଷ ପ୍ରଣାମାଞ୍ଜଳିଃ
ଯୁଷ୍ମତ୍‌ସଙ୍ଗବଶୋପଜାତ ସୁକୃତୋଦ୍ରେକସ୍ଫୁରନ୍ନିର୍ମଳ—
ଜ୍ଞାନାପାସ୍ତସମସ୍ତମୋହମହିମା ଲୀୟେ ପରେ ବ୍ରହ୍ମଣି । ୮୧ ।

ଯାବତ୍ସ୍ୱସ୍ଥ ମିଦଂ କଳେବର ଗୃହଂ ଯାବଚ୍ଚ ଦୂରେ ଜରା
ଯାବଚ୍ଚେନ୍ଦ୍ରିୟଶକ୍ତିରପ୍ରତିହତା ଯାବତ୍‌ କ୍ଷୟୋ ନାୟୁଷଃ
ଆତ୍ମଶ୍ରେୟସି ତାବଦେବ ବିଦୁଷା କାର୍ଯ୍ୟଃ ପ୍ରଯତ୍ନୋ ମହା—
ନ୍‌ ପ୍ରୋଦ୍ଦୀପ୍ତେ ଭବନେ ଚ କୂପଖନନଂ ପ୍ରତ୍ୟୁଦ୍ୟମଃ କୀଦୃଶଃ । ୮୨ ।

ନାଭ୍ୟସ୍ତା ଭୁବିବାଦିବୃନ୍ଦ ଦମନୀ ବିଦ୍ୟା ବିନୀତୋଚିତା
ଖଡ଼୍‌ଗାଗ୍ରୈଃ କରିକୁମ୍ଭପୀଠ ଦଳନୈର୍ନାକଂ ନ ନୀତଂ ଯଶଃ
କାନ୍ତାକୋମଳପଲ୍ଲବାଧରରସଃ ପୀତୋ ନ ଚନ୍ଦ୍ରୋଦୟେ
ତାରୁଣ୍ୟଂ ଗତମେବ ନିଷ୍ଫଳମହୋ ଶୂନ୍ୟାଳୟେ ଦୀପବତ୍‌ । ୮୩ ।

ଆମ୍ଭୃତ କଲ୍ଲୋଳ ଊର୍ମି, ଯଉବନ କ୍ଷଣସ୍ଥାୟୀ, ଧନ ପୁଣି
କଲ୍ପନା ଚଞ୍ଚଳ, ପ୍ରାବୃଟ ମେଘରେ ଖେଳେ ସେ ତ ସୌଦାମିନୀ
ପ୍ରିୟ ପ୍ରଣୟିନୀ ଆଲିଙ୍ଗନ ସୁଖ ସେ ପୁଣି ତ ନୁହେ ଚିର
ଭବଭୟ ବାରିନିଧି ପାର ପାଇଁ ବ୍ରହ୍ମପଦେ ଲୟ କର । ୭୭ ।

ବ୍ରହ୍ମାଣ୍ଡ ମଣ୍ଡଳେ କିବା ଅଛି ଜ୍ଞାନମନ ଲୋଭାଇବା ପାଇଁ
ମହାସିନ୍ଧୁ ଉପରେ ଷୋଡ଼ଶ କାଗଜ ଶଫରୀ ଡେଇଁଲେ ତହିଁ । ୭୮ ।

ରୁଚିର ଏ ଚନ୍ଦ୍ରକିରଣ, ରୁଚିର ଶ୍ୟାମତୃଣ ଅରଣ୍ୟାନୀ
ରମ୍ୟ ସାଧୁଜନ ସମାଗମ ସୁଖ, କାବ୍ୟେରମ୍ୟ କଥାଶ୍ରେଣୀ
କୋପରେ ଚଞ୍ଚଳ ଅଶ୍ରୁଜଳ ତଳ ରମ୍ୟମୁଖ ପ୍ରେୟସୀର
ରମ୍ୟ ଏ ସକଳ ଅନିତ୍ୟ ଭାବିଲେ ନ ଲାଗେ ଆଉ ସୁନ୍ଦର । ୭୯ ।

ଭିକ୍ଷାନ୍ନ ସମ୍ବଳ ସ୍ୱାଧୀନଚେତା ସେ ଜନସଂସର୍ଗରୁ ଦୂରେ
ରହୁଥାଏ ସଦା, ଦାନାଦାନକର୍ମେ ନିବୃତ୍ତ; ତପସ୍ୱୀ ତୀରେ
ପଥପ୍ରାନ୍ତ ଜୀର୍ଣ୍ଣ ବିଦୀର୍ଣ୍ଣ ବସନ କନ୍ଥାପ୍ରିୟ ସହଚର
ନିରହଙ୍କାର ସେ ନର୍ମୀନ ଯୋଗୀର ବ୍ରହ୍ମସୁଖ ସ୍ପୃହାସ୍ଥିର । ୮୦ ।

ହେ ମାତ ମେଦିନୀ, ତାତ ବାୟୁ ସଖେ ତେଜ ବନ୍ଧୁବର ଜଳ
ଭ୍ରାତ ବ୍ୟୋମ ନିଅ ନିବଦ୍ଧ ଅଂଜଳୀ ଅନ୍ତିମ ପ୍ରଣାମ ମୋର
ତୁମ୍ଭ ସଙ୍ଗଜାତ ସୁକୃତ ସକାଶୁ ଉଦ୍ଦିପିତ ସୁବିମଳ—
ଜ୍ଞାନେ ଗତମୋହ ମୋତେ ହେ କରାଅ ବ୍ରହ୍ମପଥେ ଅଗ୍ରସର । ୮୧ ।

କଳେବର ସୁସ୍ଥଥିବ ଯେବେ, ଥିବ ଜରା କାହିଁ ଦୂରେ ବସି
ଅଦମ୍ୟ ଇନ୍ଦ୍ରିୟ ଶକ୍ତିଥିବ ଯେବେ, କ୍ଷୟ ନହୋଇଛି ଆୟୁ
ସେ ସମୟେ ବୁଧଜନ ଆତ୍ମଶ୍ରେୟ ସକାଶେ କରନ୍ତୁ ଯତ୍ନ
ଅନ୍ୟଥା ଭବନ ଜଳୁଥିବାବେଳେ କୂପ ଖୋଳିଯିବା ସମ । ୮୨ ।

ବାପୀକୂଳ ପରଭୃତ, ନମ୍ରଜନୋଚିତ ବିଦ୍ୟା ଶିଖିନାହିଁ
ଖଣ୍ଡାଧାରେ କରୀକୁମ୍ଭ ଦଳନେ ମୋ ଯଶ ସ୍ୱର୍ଗ ଛୁଇଁ ନାହିଁ
ଚନ୍ଦ୍ରାଲୋକେ କାନ୍ତାକୋମଳ ପଲ୍ଲବାଧର ରସ ପିଇନାହିଁ
ଶୂନ୍ୟାଳୟେ ଦୀପସମ ଆହା ଯଉବନ ବିତିଗଲା କାହିଁ । ୮୩ ।

ଜ୍ଞାନଂ ସତାଂ ମାନମଦାଦି ନାଶନଂ
କେଷାଂଚିଦେତନ୍ମଦ ମାନକାରଣମ୍
ସ୍ଥାନଂ ବିବିକ୍ତଂ ଯମିନାଂ ବିମୁକ୍ତୟେ
କାମାତୁରାଣାମପି କାମକାରଣମ୍ ।୮୪।

କ୍ଷାନ୍ତ୍ୟା ଏବ ମନୋଭବଃ ସ୍ୱହୃଦୟେ ଯାତଂ ଜରାଂ ଯୌବନଂ
ହନ୍ତାଙ୍ଗେଷୁ ଗୁଣାଶ୍ଚ ବନ୍ଧ୍ୟଫଳତାଂ ଯାତା ଗୁଣଜ୍ଞୈର୍ବିନା
କିଂ ଯୁକ୍ତଂ ସହସାଭ୍ୟୁପୈତି ବଳବାନ୍ କାଳଃ କୃତାନ୍ତୋଽକ୍ଷମୀ
ହ୍ୟାଜ୍ଞାତଂ ସ୍ମରଶାସନାଙ୍ଘ୍ରିଯୁଗଳଂ ମୁକ୍ତ୍ୱାସ୍ତି ନାନ୍ୟା ଗତିଃ ।୮୫।

ତୃଷା ଶୁଷ୍ୟତ୍ୟାସ୍ୟେ ପିବତି ସଲିଳଂ ସ୍ୱାଦୁ ସୁରଭି
କ୍ଷୁଧାର୍ତ୍ତଃ ସନ୍ ଶାଲୀନ୍ କବଳୟତି ଶାକାଦି ବଳିତାନ୍
ପ୍ରଦୀପ୍ତେ କାମାଗ୍ନୌ ସୁଦୃଢ଼ତର ମାଶ୍ଲିଷ୍ୟତି ବଧୂଂ
ପ୍ରତୀକାରୋ ବ୍ୟାଧେଃ ସୁଖମିତି ବିପର୍ଯ୍ୟସ୍ୟତି ଜନଃ ।୮୬।

ସ୍ନାତ୍ୱା ଗାଙ୍ଗୈଃ ପୟୋଭିଃ ଶୁଚିକୁସୁମଫଳୈରର୍ଚ୍ଚୟିତ୍ୱା ବି—
ଭୋ ତ୍ୱାଂ ଧ୍ୟେୟେ ଧ୍ୟାନଂ ନିୟୋଜ୍ୟ କ୍ଷିତିଧରକୁହରଗ୍ରାବପର୍ଯ୍ୟଙ୍କଂ—
ଦାସ୍ତ୍ରୁ ଗରେ ଦୁଃଖାନ୍ମୋକ୍ଷେ କଦାହଂ ତବଚରଣେଧ୍ୟାନମାର୍ଗୈକ ନିଷ୍ଠଃ ।

ଶଯ୍ୟା ଶୈଳଶିଳା ଗୃହଂ ଗିରିଗୁହା ବସ୍ତ୍ରଂ ତରୁଣାଂ ତ୍ୱଚଃ
ସାରଙ୍ଗାଃ ସୁହୃଦୋ ନନୁ କ୍ଷିତିରୁହାଂ ବୃତ୍ତିଃ ଫଳୈଃ କୋମଳୈଃ
ଯେଷାଂ ନିର୍ଝରମମ୍ବୁପାନମୁଚିତଂ ରତ୍ୟୈବ ବିଦ୍ୟାଙ୍ଗନା
ମନ୍ୟେ ତେ ପରମେଶ୍ୱରାଃ ଶିରସି ଯୈର୍ବଦ୍ଧୋ ନ ସେବାଞ୍ଜଳିଃ ।୮୮।

ସତ୍ୟାମେବ ତ୍ରିଲୋକୀସରିତି ହରଶିରଶ୍ଚୁମ୍ବିନୀବଚ୍ଛଟାୟାଂ
ସଦ୍ବୃତ୍ତିଂ କଳ୍ପୟନ୍ତ୍ୟାଂ ବଟବିଟପିଭବୈର୍ବଳ୍କଳୈଃ ଫଳୈଶ୍ଚ
କୋଽୟଂ ବିଦ୍ୱାନ୍ ବିପତ୍ତିଜ୍ୱରଜନିତରୁଜାତୀବ ଦୁଃଶ୍ୱାସିକାନାଂ
ବକ୍ତ୍ରଂ ବୀକ୍ଷେତ ଦୁଃସ୍ଥେ ଯଦି ହି ନ ବିଭୃୟାତ୍ ସ୍ୱେ କୁଟୁମ୍ବେଽନୁକମ୍ପାମ୍ ।୮୯।

ସନ୍ଥଜନମନୁ ମାନମୋହମଦ ବିଦୂରିତ କରେ ଜ୍ଞାନ
ସେହି ଜ୍ଞାନ ପୁଣି କାହା ମନେ ମୋହମଦର ହୁଏ କାରଣ
ମୁକ୍ତିପାଇଁ ଯତି ଯୋଗସାଧେ ବସି ଏକାକୀ ସେ ନିକାଞ୍ଚନେ
କାମିନୀର ସେହି ଭଜନରେ ରତ ହୁଏ ଅନ୍ତକାମ କର୍ମେ । ୮୪ ।

ହୃଦପ୍ରେତ ଶୀର୍ଣ୍ଣହେଲା ମନୋରଥ, ଯଉବନ ଜରାଜୀର୍ଣ୍ଣ
ଗୁଣଗ୍ରାହ୍ୟ ଜନ ଅଭାବେ ଅଙ୍ଗେହିଁ ଲୋପହେଲେ ଗୁଣଗଣ
ବଳବାନକାଳ ଉପସ୍ଥିତ ଆସି କାଳାଂତକ ପ୍ରଭୁ ସେହି
ସ୍ମର ହର ଶିବ ଚରଣ ଯୁଗଳ ବିନା ଅନଗତି ନାହିଁ । ୮୫ ।

ତୃଷାତୁରପ୍ରାଣୀ ସୁଗନ୍ଧିତ ସ୍ୱାଦୁ ଜଳପାନେ ହୁଏ ଶାଂତ
କ୍ଷୁଧାର୍ତ୍ତି ତଣ୍ଡୁଲ ବ୍ୟଞ୍ଜନ ଭୋଜନ କରିହୁଏ ପରିତୃପ୍ତ
ପ୍ରଦୀପ୍ତ କାମାଗ୍ନିନର ଦୃଢ଼େ ଆଲିଙ୍ଗନ କରେ ପ୍ରେୟସୀରେ
ବ୍ୟାଧି ପ୍ରତିକାର ଏସବୁରେ ନର ସୁଖଭୋଗ ମନେ କରେ । ୮୬ ।

ଗଙ୍ଗାସ୍ନାନ କରି ଶୁଚି ଫଳପୁଷ୍ପେ ହେ ଶମ୍ଭୋ ଅର୍ଚ୍ଚନା ପରେ
ପର୍ବତକନ୍ଦରେ ଶିଳାଶେଜେ ବସି ତବପଦେ ଧ୍ୟାନ କରେ
ଆତ୍ମାରେ ସନ୍ତୋଷ, ଫଳାଶନ, ଗୁରୁବଚନ ମାନି ହେ ହର
ତବପଦେ ଧ୍ୟାନନିଷ୍ଠ ମୋ ଦୁଃଖରୁ କେବେ ମୁଁ ହୋଇବି ପାର । ୮୭ ।

ଶେଜ ଶୈଳଶିଳା, ଗୃହ ଗିରିଗୁହା, ବସନ ବଲ୍‌କଲ ଯାର
ଅଶନ ତରୁଣ ବିଟପ ରସାଳ ଫଳ; ମୃଗ ସହଚର
ନିର୍ଝରର ଶୁଚି ଜଳପାନ, ବିଦ୍ୟା ଅଙ୍ଗନା ସଙ୍ଗେ ଯା ରତି
ପରମେଶ୍ୱର ସେ, ଯୋଡ଼ହସ୍ତେ ଆନେ କରେନାହିଁ କେବେ ନତି । ୮୮ ।

ମହେଶମସ୍ତକଚୁମ୍ବିନୀ ଜାହ୍ନବୀ ତଟର ବଟବଲ୍‌କଳ
ସ୍ୱାଦୁଫଳ ତେଜି କିଏ ବା ପଣ୍ଡିତ ବରିବ ଗୃହ ଜଞ୍ଜାଳ
ଯଦି ସ୍ୱକୁଟୁମ୍ବପ୍ରତି ଅନୁକମ୍ପା ବିଗଳିତ ନୁହଂତା ସେ
ଦେଖଂତା କି କାଂତା ବିପତ୍ତି ଜର୍ଜର ରୁଗ୍‌ଣ ମୁଖ ଦୀର୍ଘଶ୍ୱାସେ । ୮୯ ।

ଉଦ୍ୟାନେଷୁ ବିଚିତ୍ର ଭୋଜନବିଧିସ୍ତୀବ୍ରାତି ତୀବ୍ରଂ ତପଃ
କୌପୀନାବରଣଂ ସୁବସ୍ତ୍ରମମିତଂ ଭିକ୍ଷାଟନଂ ମଣ୍ଡନମ୍ ।
ଆସନ୍ନଂ ମରଣଂ ଚ ମଙ୍ଗଳସମଂ ଯସ୍ୟାଂ ସମୁତ୍ପଦ୍ୟତେ
ତାଂ କାଶୀଂ ପରିହୃତ୍ୟହଂତ ବିବୁଧୈରନ୍ୟତ୍ର କିଂ ସ୍ଥୀୟତେ । ୯୦ ।

ନାୟଂ ତେ ସମୟୋ ରହସ୍ୟମଧୁନା ନିଦ୍ରାତି ନାଥୋ ଯଦି
ସ୍ଥିତ୍ୱା ଦ୍ରକ୍ଷ୍ୟତି କୁପ୍ୟତି ପ୍ରଭୁରିତି ଦ୍ୱାରେଷୁ ଯେଷାଂ ବଚଃ ।
ଚେତସ୍ତାନପହାୟ ଯାହି ଭବନଂ ଦେବସ୍ୟ ବିଶ୍ୱେଶିତୁ-
ର୍ନିର୍ଦୌବାରିକ ନିର୍ଦୟୋକ୍ତ୍ୟପରୁଷଂ ନିଃସୀମଶର୍ମପ୍ରଦମ୍ । ୯୧ ।

ପ୍ରିୟସଖି ବିପଦ୍ଦଣ୍ଡବ୍ରାତ ପ୍ରତାପ ପରଂପରା—
ତିପରିଚପଲେ ଚିଂତାଚକ୍ରେ ନିଧାୟ ବିଧିଃ ଖଳଃ ।
ମୃଦମିବ ବଳାତ୍ପିଣ୍ଡୀକୃତ୍ୟ ପ୍ରଗଲ୍‌ଭ କୁଲାଲ ବ—
ଦ୍ ଭ୍ରାମୟତି ମନୋ ନୋ ଜାନୀମଃ କିମତ୍ର ବିଧାସ୍ୟତି । ୯୨ ।

ମହେଶ୍ୱରେ ବା ଜଗତାମଧୀଶ୍ୱରେ ଜନାର୍ଦନେ ବା ଜଗଦଂତରାତ୍ମନି
ତୟୋର୍ନ ଭେଦପ୍ରତିପତ୍ତିରସ୍ତି ମେ ତଥାପି ଭକ୍ତିସ୍ତରୁଣେନ୍ଦୁଶେଖରେ ।୯୩।

କୌପୀନଂ ଶତଖଣ୍ଡଜର୍ଜ୍ଜରତରଂ କନ୍ଥା ପୁନସ୍ତାଦୃଶୀ
ନୈଶ୍ଚିନ୍ତ୍ୟଂ ସୁଖସାଧ୍ୟଭୈକ୍ଷମଶନଂ ଶଯ୍ୟା ଶ୍ମଶାନେ ବନେ ।
ମିତ୍ରାମିତ୍ରସମାନତାତିବିମଳା ଚିଂତାଥ ଶୂନ୍ୟାଳୟେ
ଧ୍ୱସ୍ତାଶେଷମଦପ୍ରମାଦମୁଦିତୋ ଯୋଗୀ ସୁଖଂ ତିଷ୍ଠତି । ୯୪ ।

ବହୁବିଧ ଭୋଜ୍ୟ ଫଳ ଉଦ୍ୟାନରେ ଶ୍ରାବ୍ୟ ତପସ୍ୟାର ସ୍ଥଳୀ
କୌପୀନ ଯହିଁ ଶୁଭ୍ର ଆବରଣ, ଭୂଷଣ ଭିକ୍ଷାର ଝୁଲି ।
ମୃତ୍ୟୁ ହେଲେ ଯହିଁ ପରମ ମଙ୍ଗଳ, ଗୁଡ଼ି ସେହି କାଶୀ ଧାମ
ଅନ୍ୟଥ କପାଇଁ ବୁଧଜନେ ଯାଇ କରନ୍ତି ଆହ୍ୱା ଆଶ୍ରମ । ୯୦ ।

ବେଳନାହିଁ ଏବେ, ଏକାଂତେ ଅଛନ୍ତି, ନିଦ୍ରିତ ସେ; ଦେଖି ତୋରେ
ରଗିବେ ମୋ ପ୍ରଭୁ, ଯାଅ ବେଗି ଏଥୁ, ଏବାଣୀ ଶୁଣି ଯେ ଦ୍ୱାରେ ।
ରେ ମନ ସେଦ୍ୱାର ତେଜ ବିଶ୍ୱେଶ୍ୱର ଦ୍ୱାରେ ଯାଅ ଯହିଁ କେହି
ନିଷ୍ଠୁର ବଚନ ପ୍ରହାରି ନଥିବେ, ଶାନ୍ତିର ନିଳୟ ସେହି । ୯୧ ।

ପ୍ରଗଲ୍‌ଭ କୁମ୍ଭାର ମାଟିପିଣ୍ଡେ ଯଥା ବହୁବିଧ ପାତ୍ର କରେ
ତେମଂତେ ନିର୍ବୋଧ ବିଧାତା ବିପତ୍ତି ସମୂହକୁ ସଦର୍ପରେ ।
ପରଂପରାଗତ ଚଞ୍ଚଳ ଯେ ଚିଂତାଚକ୍ରେ ତୋରେ ଏବେ ଥୋଇ
ରେ ମନ ଭ୍ରମାଏ ତୋତେ ସେ ଭବିଷ୍ୟେ କି କରିବ ନଜାଣଇ । ୯୨ ।

ଜଗଦୀଶ୍ୱର ସେ ମହେଶ୍ୱର ପୁଣି ଜଗଦାତ୍ମା ଜନାର୍ଦ୍ଦନ
ନ ଜାଣଇ ଭେଦ ତଥାପି ବାଳେନ୍ଦୁ ମଉଳିରେ ମମ ମନ । ୯୩ ।

ଶତଖଣ୍ଡ ବିଖଣ୍ଡିତ କୌପୀନ କନ୍ଥା ପୁଣି ତତୋଧିକ
ସୁଖସାଧ୍ୟ ଭିକ୍ଷା ଅଶନ, ଶ୍ମଶାନେ ବନେ ବା ଶୟନେ ସୁଖ ।
ଶତ୍ରୁ ମିତ୍ରେ ସମଭାବ ସଦା, ଧ୍ୟାନ ବିମଳ ଶୂନ୍ୟ ନିଳୟେ
ମଦମୋହ ସବୁ ବିଧ୍ୱସ୍ତ ମୁଦିତ ଯୋଗୀ ସଦା ସୁଖେ ସୁଖୀ ରହେ । ୯୪ ।

ଭୋଗାଭଂଗୁରବୃତ୍ତୟୋ ବହୁବିଧାସ୍ତୈରେବ ଚାୟଂ ଭବ—
ସ୍ତତ୍କସ୍ୟେହ କୃତେ ପରିଭ୍ରମତ ରେ ଲୋକାଃ କୃତଂ ଚେଷ୍ଟିତୈଃ ।
ଆଶାପାଶଶତୋପଶାଂତିବିଶଦଂ ଚେତଃ ସମାଧୀୟତାଂ
କାମୋତ୍ପତ୍ତିବଶେ ସ୍ୱଧାମନି ଯଦି ଶ୍ରଦ୍ଧେୟମସ୍ମଦ୍ୱଚଃ । ୯୫ ।

ଧନ୍ୟାନା ଗିରିକନ୍ଦରେ ନିବସତାଂ ଜ୍ୟୋତିଃ ପରଂଧ୍ୟାୟତା
ମାନନ୍ଦାଶ୍ରୁଜଲଂ ପିବନ୍ତିଶକୁନା ନିଃଶଂକ ମଂକେଶୟାଃ-
ଅସ୍ମାକଂ ତୁ ମନୋରଥୋପରଚିତ ପ୍ରାସାଦବାପୀତଟ—
କ୍ରୀଡାକାନନକେଳିକୌତୁକଜୁଷାମାୟୁଃ ପରିକ୍ଷୀୟତେ । ୯୬ ।

ଆଘ୍ରାତଂ ମରଣେନ ଜନ୍ମ ଜରୟା ବିଦ୍ୟୁଚ୍ଚଳଂ ଯୌବନଂ
ସଂତୋଷୋ ଧନଲିପ୍ସୟା ଶମସୁଖଂ ପ୍ରୌଢାଙ୍ଗନା ବିଭ୍ରମୈଃ ।
ଲୋକୈର୍ମତ୍ସରିଭିର୍ଗୁଣା ବନଭୁବୋ ବ୍ୟାଳୈର୍ନୃପା ଦୁର୍ଜନୈ
ରସ୍ଥୈର୍ୟେଣ ବିଭୂତୟରପ୍ୟପହୃତା ଗ୍ରସ୍ତଂ ନ କିଂ କେନ ବା । ୯୭ ।

ଆଧିବ୍ୟାଧିଶତୈର୍ଜନସ୍ୟ ବିବିଧୈରାରୋଗ୍ୟମୁନ୍ମୂଲ୍ୟତେ
ଲକ୍ଷ୍ମୀର୍ଯତ୍ର ପତନ୍ତି ତତ୍ର ବିବୃତଦ୍ୱାରା ଇବ ବ୍ୟାପଦଃ ।
ଜାତଂ ଜାତମବଶ୍ୟମାଶୁ ବିବଶଂ ମୃତ୍ୟୁଃ କରୋତ୍ୟାତ୍ମସା—
ତତ୍କିଂ ନାମ ନିରଙ୍କୁଶେନ ବିଧିନା ଯନ୍ନିର୍ମିତଂ ସୁସ୍ଥିତମ୍ । ୯୮ ।

କୃଚ୍ଛ୍ରେଣା ମେଧ୍ୟମଧ୍ୟେ ନିୟମିତତନୁଭିଃ ସ୍ଥୀୟତେ ଗର୍ଭ-
ମଧ୍ୟେ କାଂତାବିଶ୍ଳେଷଦୁଃଖ ବ୍ୟତିକରବିଷମେ ଯୌବନେ ବିପ୍ରୟୋଗ ।
ନାରୀଣାମପ୍ୟବଜ୍ଞାବିଳସିତନିୟତଂ ବୃଦ୍ଧଭାବୋଽପ୍ୟସାଧୁଃ
ସଂସାରେ ମନୁଷ୍ୟାବଦତ ଯଦିସୁଖଂ ସ୍ୱଳ୍ପମପ୍ୟସ୍ତି କିଂଚିତ୍ । ୯୯ ।

ଭଙ୍ଗୁର ପ୍ରକୃତି ବେଗ, ହେ ମାନବ ଭବବାଧାପୂର୍ଣ୍ଣ ସେ ତ
ଜାଣି ଏହା ବୃଥା ଭ୍ରମୁଛ କପାଇଁ ହୋଇ ତହିଁ ବିମୋହିତ ।
ଯଦି ମୋ ବଚନେ ଶ୍ରଦ୍ଧା ଥାଏ ଶୁଣ, ଛେଦଶତ ଆଶାପାଶ
ଜିତକାମ ହୋଇ ବିମଳ ମାନସେ ସମାଧିସ୍ଥ ହୋଇ ବସ । ୯୫ ।

ଧନ୍ୟ ସେହୁ ଗିରିଗୁହାରେ ସଦା ଯେ ବସେ ପରଂବ୍ରହ୍ମ ଧ୍ୟାନେ
ଅଂକେ ନିଃସଂକୋଚେ ବସି ଯା ପିବନ୍ତି ଆନନ୍ଦାଶ୍ରୁ ବିହଙ୍ଗମେ ।
ଆମ୍ଭେ ମନୋରଥ ପ୍ରାସାଦ ସରସୀ ତଟକ୍ରୀଡ଼ାବନେ କେଳି—
କଉତୁକେ ଦିନ ଯାପିବା, ଆୟୁଷ ଯାଉପଛେ ସରି ସରି । ୯୬ ।

ମରଣର ହୋଡେ଼ ଜନ୍ମ, ବିଦ୍ୟୁତଚଳ ଯଉବନ ଜରାଗ୍ରସ୍ତ
ଧନଲୋଭଗ୍ରସ୍ତ ସଂତୋଷ ଅଙ୍ଗନାମୋହେ ଶାନ୍ତିସୁଖ ଲୁପ୍ତ ।
ମାନବ ପଶ୍ରରଗୁଣ ଗ୍ରସ୍ତ, ବନବ୍ୟାଳେ, ରାଜା ଦୁର୍ଜନେତ
ଚପଳତାଗ୍ରସ୍ତ ବିଭୂତି, କାହିଁ କେ ରହିଛି ନୋହି ଗ୍ରସିତ । ୯୭ ।

ଶତ ଆଧିବ୍ୟାଧି ନରର ଆରୋଗ୍ୟ ମୂଳ ଉତ୍ପାଟନେ ରତ
ଯହିଁ ଧନ ତହିଁ ଦ୍ୱାରଖର୍ଗି କବା ପଶନ୍ତି ବିପଦ ଶତ ।
ଜାତ ହେଉ ହେଉ ବଳାତ୍କାରେ ମୃତ୍ୟୁ କରେ ତାରେ ଆତ୍ମସାତ
କି ଅଛି ସୃଷ୍ଟିର ନିରଙ୍କୁଶ ବିଧି ଯାହା ସେ କରେ ନିର୍ମିତ । ୯୮ ।

ଅମେଧ୍ୟ ମଧ୍ୟରେ ସଂକୁଚିତ ତନୁ ଗର୍ଭେ କଷ୍ଟେ ବାଲକାଳ
କାଂତା ବିୟୋଗରେ ଦାରୁଣ ଯନ୍ତ୍ରଣା ଯଉବନ ସମୟର ।
ବୃଦ୍ଧକାଳେ ନାରୀ ଅବଜ୍ଞାଜନକ ଅନାଦର ସୁନିଶ୍ଚିତ
କହ ରେ ମାନବ ଭବେ ଯଦି ସୁଖ ଥାଏ କାହିଁ କେବେ ସେ ତ । ୯୯

ଆୟୁର୍ବର୍ଷଶତଂ ନୃଣାଂ ପରିମିତଂ ରାତ୍ରୌ ତଦର୍ଦ୍ଧଂ ଗତଂ
ତସ୍ୟାର୍ଦ୍ଧସ୍ୟ ପରସ୍ୟ ଚାର୍ଦ୍ଧମପରଂ ବାଳତ୍ୱ ବୃଦ୍ଧତ୍ୱୟୋଃ ।
ଶେଷଂ ବ୍ୟାଧିବିୟୋଗଦୁଃଖ ସହିତଂ ସେବାଦିଭିର୍ନୀୟତେ
ଜୀବେ ବାରିତରଙ୍ଗଚଞ୍ଚଳତରେ ସୌଖ୍ୟଂ କୁତଃ ପ୍ରାଣିନାମ୍ । ୧୦୦ ।

ବ୍ରହ୍ମଜ୍ଞାନ ବିବେକନିର୍ମଳଧିୟଃ କୁର୍ବନ୍ତ୍ୟହୋ ଦୁଷ୍କରଂ
ଯନ୍ମୁଞ୍ଚନ୍ତ୍ୟୁପଭୋଗଭାଞ୍ଜ୍ୟପି ଧନାନ୍ୟେକାନ୍ତତୋ ନିଃସ୍ପୃହାଃ ।
ନ ପ୍ରାପ୍ତାନି ପୁରା ନ ସଂପ୍ରତି ନ ଚ ପ୍ରାପ୍ତୌ ଦୃଢ଼ ପ୍ରତ୍ୟୟୋ
ବାଞ୍ଛାମାତ୍ର ପରିଗ୍ରହାଣ୍ୟପି ପରଂ ତ୍ୟକ୍ତୁଂ ନ ଶକ୍ତା ବୟମ୍ । ୧୦୧ ।

ବ୍ୟାଘ୍ରୀବ ତିଷ୍ଠତି ଜରା ପରିତର୍ଜୟନ୍ତୀ
ରୋଗାଶ୍ଚ ଶତ୍ରବ ଇବ ପ୍ରହରନ୍ତି ଦେହମ୍ ।
ଆୟୁଃ ପରିସ୍ରବତି ଭିନ୍ନ ଘଟାଦିବାମ୍ଭୋ
ଲୋକସ୍ତଥାପ୍ୟହିତମାଚରତୀତି ଚିତ୍ରମ୍ । ୧୦୨ ।

ଗାତ୍ରଂ ସଂକୁଚିତଂ ଗତିର୍ବିଗଳିତା ଭ୍ରଷ୍ଟା ଚ ଦନ୍ତାବଳି ର୍ଦୃ-
ଷ୍ଟିର୍ନଶ୍ୟତି ବର୍ଦ୍ଧତେ ବଧିରତା ବକ୍ତ୍ରଂ ଚ ଲାଳାୟତେ ।
ବାକ୍ୟଂ ନାଦ୍ରିୟତେ ଚ ବାନ୍ଧବଜନୋ ଭାର୍ଯ୍ୟା ନ ଶୁଶ୍ରୂଷତେ
ହା କଷ୍ଟଂ ପୁରୁଷସ୍ୟ ଜୀର୍ଣ୍ଣବୟସଃ ପୁତ୍ରୋଽପ୍ୟମିତ୍ରାୟତେ । ୧୦୩ ।

କ୍ଷଣଂ ବାଳୋ ଭୂତ୍ୱା କ୍ଷଣମପି ଯୁବା କାମରସିକଃ
କ୍ଷଣଂ ବିତ୍ତୈର୍ହୀନଃ କ୍ଷଣମପି ଚ ସଂପୂର୍ଣ୍ଣବିଭବଃ ।
ଜରାଜୀର୍ଣ୍ଣୈରଙ୍ଗୈର୍ନଟ ଇବ ବଳୀମଣ୍ଡିତ ତନୁ
ର୍ନରଃ ସଂସାରାନ୍ତେ ବିଶତି ଯମଧାନୀଜବନିକାମ୍ । ୧୦୪ ।

ଅହୌ ବାହାରେ ବା ବଳବତି ରିପୌ ବା ସୁହୃଦି ବା
ମଣୌ ବା ଲୋଷ୍ଟେ ବା କୁସୁମ ଶୟନେ ବା ଦୃଷଦି ବା
ତୃଣେ ବା ସ୍ତ୍ରୈଣେ ବା ମମ ସମଦୃଶୋ ଯାନ୍ତୁ ଦିବସାଃ
କ୍ୱଚିତ୍ ପୁଣ୍ୟାରଣ୍ୟେ ଶିବଶିବଶିବେତି ପ୍ରଳପତଃ । ୧୦୫ ।



ଶତବର୍ଷ ଆୟୁ ମାନବର ଅର୍ଦ୍ଧ, ଗତେ କଟେ ନିଦ୍ରାଭରେ
ବାକି ଅର୍ଦ୍ଧୁ ଅର୍ଦ୍ଧ ଅଜ୍ଞାନେ ଯାଏ ସେ ବାଳବୃଦ୍ଧ ଅବସ୍ଥାରେ ।
ଶେଷର ଚଉଠ ବ୍ୟାଧି ଓ ବିୟୋଗ ଦୁଃଖେ, ସେବାଦିରେ କଟେ
ଚଞ୍ଚଳ ଜୀବନ ବାରିବୀଚିସମ ସୁଖ କାହିଁ ଏ ଜଗତେ । ୧୦୦ ।

ବିମଳ ବୁଦ୍ଧି ସେ ବ୍ରହ୍ମଜ୍ଞାନୀ କି ଯେ କରନ୍ତି ଦୁଷ୍କର କର୍ମ
ତେଜି ଧନ, ଭୋଗ, କାଞ୍ଚନ ନିଃସ୍ପୃହେ ଏକାଂତେ ବିଚରନ୍ତି ବନ ।
ଏସବୁ ଲଭିବି ପୂର୍ବେ, ନାହିଁ ଏବେ, ନମିଳିବ ଭବିଷ୍ୟତେ
ଲଭିବାର ଲୋଭ ଯାଇନାହିଁ, ତ୍ୟାଗ କରିବି କିସ କେମଂତେ । ୧୦୧ ।

ବ୍ୟାଘ୍ରୀସମ ଜରା ଗର୍ଜିତର୍ଜି ଅଗ୍ରେ ଉପସ୍ଥିତ ଭୟଙ୍କର
ଶତ୍ରୁସମ ରୋଗ ଶରୀରେ ନିଷ୍ଠୁରେ ପ୍ରହାରନ୍ତି ବାରଂବାର ।
ଆୟୁଷ ନିଃଶେଷ ହେଉଛି ଯଥା ସେ ସଛିଦ୍ରଘଟରୁ ନୀର
ତଥାପି ଆପଣା ଅହିତ କର୍ମରେ ଲିପ୍ତ ନର ନିରନ୍ତର । ୧୦୨ ।

ତନୁ ସଙ୍କୁଚିତ ଅସ୍ଥିରଗତି ତା ଦନ୍ତପନ୍ତି ବିଗଳିତ
ଦୃଷ୍ଟିଶକ୍ତିହୀନ, କର୍ଣ୍ଣେ ବଧିରତା, ମୁଖେଲାଳ ପ୍ରବାହିତ ।
ବନ୍ଧୁଜନ ସୁଖେ ନଶୁଣନ୍ତି କଥା, ଶୁଶ୍ରୂଷା ନକରେ ନାରୀ
ମାନବର ଆହା ବୃଦ୍ଧକାଳେ କଷ୍ଟ, ପୁଅ ହୁଏ ଶତ୍ରୁପରି । ୧୦୩ ।

କ୍ଷଣେ ବାଳସମ କ୍ଷଣେ ବା ଯୁବକ କାମରସେ ରସିକ ସେ
କ୍ଷଣେ ଧନହୀନ କ୍ଷଣେ ପୁଣି ମହା ବିଭବରେ ସଂପୂର୍ଣ୍ଣ ସେ ।
ଜରାଜୀର୍ଣ୍ଣ ନଟ ରଙ୍ଗବୋଲେ ଯଥା ବଳୀଯୁକ୍ତ ତା ତନୁରେ
ନର ଏ ସଂସାରେ ଯମଯବନିକା ଭିତରୁ ସେ ଗତିକରେ । ୧୦୪ ।

ଅହି ଅବା ହାର ମିତ୍ର ସେ ଆସନ୍ତୁ ବଇରୀ ବା ବନ୍ଧୁଜନ
ମଣି କିମ୍ବା ଶିଳା ମିଳୁ ସେ କୁସୁମ ଅଥବା ଶିଳାଶୟନ ।
ତୃଣବନେ ଅବା ବନିତା ଗହଣେ ହୋଇ ସମଦର୍ଶୀ ମନ
କେବେ ପୁଣ୍ୟବନେ ଶିବ ଶିବ ଶିବ ଉଚ୍ଚାରି ଯାପିବି ଦିନ । ୧୦୫ ।

# ଭର୍ତ୍ତୃହରି ଶତକମ୍

## ନୀତି ଶତକମ୍
(ଶ୍ଳୋକ ସହିତ)

ଶ୍ରୀ ଜଗନ୍ନାଥ ମିଶ୍ର

# ଭର୍ତ୍ତୃହରି-ନୀତିଶତକମ୍

## ନୀତିଶତକମ୍

ଦିଗକାଳାଦିରେ ଅବଚ୍ଛିନ୍ନ ପୁଣି ଅନନ୍ତ ଚିନ୍ମୟମୂର୍ତ୍ତି
ଅନୁଭବଙ୍କେପ୍ସା ଶାନ୍ତ ତେଜସ୍କର ଦେବଙ୍କୁ ମୋର ପ୍ରଣତି । ୧ ।

ସଦା ଯାର ଚିନ୍ତାକରେ ସେ ବିରକ୍ତ ହୋଇ ମୋରେ ଆନେ ଚିନ୍ତେ
ସେପୁରୁଷ ଭଜେ ଆନନାରୀ ପାଇଁ ଯେ ନାରୀ ଇଚ୍ଛଇ ମୋତେ ।
ଏଣୁ ମୋର ପ୍ରିୟା, ତା ଜାର ପୁରୁଷ ମୋ ପ୍ରେମିକା, ପୁଣି ମୋରେ
ଧିକ୍କାରଇ, ଧିକ ମଦନକୁ ଯାର ପ୍ରେରଣା ଏସବୁ ମୂଳେ । ୨ ।

ବଶହୁଏ ଅଜ୍ଞ ସହଜରେ ଅତିସହଜେ ବଶପଣ୍ଡିତ
ଅଳ୍ପଜ୍ଞାନ ନରେ ବଶ କରିବାରେ ବ୍ରହ୍ମା ଆପେ ଅସମର୍ଥ । ୩ ।

ମଗର ମୁଖର କରାଳ ଦନ୍ତରୁ ମଣିବଳେ କାଢ଼ିପାର
ଉତ୍ତାଳ ତରଙ୍ଗ ସଂକୁଳ ସାଗର ସନ୍ତରଣେ ତରିପାର ।
କ୍ରୁଦ୍ଧ ଭୁଜଙ୍ଗମ ପୁଷ୍ପହାରପରି ଧରିପାର ମସ୍ତକରେ
ମନ୍ଦକର୍ମେରତ ମୂର୍ଖଜନ ଚିତ୍ତ ଫେରାଇ କେହି ନପାରେ । ୪ ।

ସଯତ୍ନେ ପେଡ଼ିଲେ ବାଲୁକାରାଶିରୁ ତୈଳ ଅବା ମିଳିପାରେ
ତୃଷାର୍ତ୍ତ ବା କେବେ ମରୀଚିକା ଜଳ ପିଇ ତୃଷା ବାରିପାରେ ।
ଭ୍ରମୁଭ୍ରମୁ ଅବା ସଂସାର କାନ୍ତାରେ ଶଶଶୃଙ୍ଗ ମିଳିଯିବ
ମୂର୍ଖଜନ ଚିତ୍ତ ନିବଷ୍ଟ ଯହିଁରେ ତହୁଁ ତା କେ ଫେରାଇବ । ୫ ।

କୋମଳକମଳ ତନ୍ତୁରେ କରୀନ୍ଦ୍ର ବାନ୍ଧିବାକୁ ଯେ ଗୃହିଁବ
ଶିରୀଷକୁସୁମ କୋମଳ ଦଳରେ ହୀରା ପୋଡ଼ିବାକୁ ଯିବ ।
ବିନ୍ଦୁଏ ମଧୁରେ ଲବଣଅମ୍ବୁଧି ମଧୁର ଯେ କରିପାରେ
ସେହିଯିବ ନୀତିବାକ୍ୟେ ମୂର୍ଖମତି ନେବାକୁ ସତ ମାର୍ଗରେ । ୬ ।

ମଉନ ସ୍ୱାଧୀନ, ବିଧିକଲା ତାରେ ଅଜ୍ଞଜନ ଆଚ୍ଛାଦନ
ସହଜେ ଜ୍ଞାନୀଙ୍କ ସମାଜେ ଅଜ୍ଞାନୀ ଭୂଷଣ ହୁଏ ମଉନ । ୭ ।

ଯେବେ ସ୍ୱଳ୍ପଜ୍ଞାନ ଥିଲା ମୋ, ଥିଲି ମୁଁ ମଦାନ୍ଧ ମାତଙ୍ଗସମ
ଭାବୁଥିଲି ମନେ ମୁହିଁ ତ ସର୍ବଜ୍ଞ ମୋ ସମ ନାହିଁ କେ ଆନ
ଯେବେ କିଛିକିଛି ଜ୍ଞାନୀଜନଠାରୁ ଜ୍ଞାନ ଆହରଣ କଲି
ତେବେ ମୁଁ ଜାଣିଲି ମୂର୍ଖମୁହିଁ, ମଦଗର୍ବ ଜ୍ୱର ଗଲା ଛୁଡ଼ି ।୮।

କୃମି ଶତପୂର୍ଣ୍ଣ ଲାଳବିଗଳିତ ହାଡ଼ଖଣ୍ଡେ ମାଂସହୀନ
ଘୃଣ୍ୟରସହୀନ ଲୋଭେ ଯେବେ ଶ୍ୱାନ ନଇଛଇ କିଛି ଆନ ।
ତେସନେ ଯେକାଳେ କ୍ଷୁଦ୍ରଜନ ନିଜ କ୍ଷୁଦ୍ରକର୍ମେ ନିମଗ୍ନ ତ
ଆତ୍ମନ୍ୟୂନରେ ନ ଗଣନ୍ତି ଇନ୍ଦ୍ର ତା ପାଶେ ହେଲେ ଉପଗତ ।୯।

ସୁରପୁରୁ ଗଙ୍ଗା ଶିବଶିରେ ଆସି ପଡିଲେ ଭୂଧର ଶିରେ
ତହୁଁ ସେ କ୍ଷିତିରେ ଶତଛିନ୍ନଧାରେ ମିଶିଲେ ଜଳଧି ମାରେ ।
ଉର୍ଦ୍ଧ୍ୱଲୋକୁ ଆସି ଅବନୀରେ ହେଲେ କ୍ଷୀରବାରିଧିରେ ଲୀନ ।
ନିମ୍ନଗାମୀ ହୋଇ ନାଶଯାଏ ତଥା ବିବେକ ହାରିଲେ ଜନ ।୧୦।

ଜଳଢାଳି ବହ୍ନି ବାରିପାରି ଛତ୍ରେ ପ୍ରଖର ରବିର ତାପ
ଯଷ୍ଟିରେ ଗର୍ଦ୍ଦଭଗାଈ ପୁଣି ତୀକ୍ଷ୍ଣ ଅଙ୍କୁଶରେ ଗଜାଧିପ ।
ଭେଷଜ ପ୍ରୟୋଗେ ବ୍ୟାଧି, ମନ୍ତ୍ରବଳେ ବିଷ ବିଦୂରିତ ହୋଇ
ସବୁର ଔଷଧ ଶାସ୍ତ୍ରେ ସୁବିଦିତ ମୂର୍ଖର ଔଷଧ ନାହିଁ ।୧୧।

ସାହିତ୍ୟ ସଂଗୀତ କଳାହୀନ ନର ପଶୁ ପୁଚ୍ଛଶୃଙ୍ଗହୀନ
ତୃଣ ନ ଭକ୍ଷିଣ ବଞ୍ଚିପାରେ ସେହି ପଶୁର ଉତ୍ତମ ଗୁଣ ।୧୨।

ପର୍ବତ କାନ୍ତାରେ ବନଚରସହ ସହବାସ ବରଂ ଭଲ
ସୁରେନ୍ଦ୍ର ଭବନେ ମୂର୍ଖଜନସହ ସଂପର୍କ ମରଣ ତୁଲ ।୧୩।

ତପଦାନ ବିଦ୍ୟା ନାହିଁ ଯାର ନାହିଁ ଜ୍ଞାନଶୀଳ ଗୁଣଧର୍ମ
ମର୍ତ୍ତ୍ୟଲୋକେ ସେହୁ ଅବନୀର ଭାର ନରରୂପମୃଗ ସମ ।୧୪।

ଶାସ୍ତ୍ରଯୁକ୍ତବାଣୀ, ଶିଷ୍ୟଗଣେ ବେଦ ପାଠନେ ସମର୍ଥ ଯେହୁ
ବିଖ୍ୟାତ ସେ କବିକୁଳ ଅନାଟନେ ଯେ ଦେଶେ ରହନ୍ତି, ସେହୁ
ରାଜାହିଁ ତ ମୂର୍ଖ, କବି ତ ଈଶ୍ୱର ଧନହୀନ ସେହୁ ଯିନା
ମଣିନୁହେ ମଣି ପରୀକ୍ଷକ ମୂର୍ଖ ମଣିମୂଲ୍ୟ ହେଲେ ଊଣା ।୧୫।

ଚକ୍ଷୁରେ ଗୋଚର ନୁହଇ ଯେ ପୁଣି ସଦାସୁଖ ପ୍ରଦାୟିନୀ
ଯେତେଦାନ ଦେଉଥିଲେ ହେଁ ଯାଚକେ ବଢ଼େ ଦିନୁଦିନ ପୁଣି ।
କଳ୍ପେ କଳ୍ପେ ଯାହା ନୁହଇ ନିଧନ ବିଦ୍ୟା ଅନ୍ତରର ଧନ
ଅଭିମାନ ତେଜ ଭଜତାରେ ରାଜା ତା ସମ କି ଅଛି ଆନ ।୧୬।

ପରମାର୍ଥପଦ କରଗତ ଯାର ନକର ତା ଅପମାନ
ପଥତାର କେବେ ନପାରିବ ରୋଧି ତୃଣସମ ତବଧନ ।
ଅଭିନବ ମଦଧାରାସୁଶୋଭିତ ଶ୍ୟାମଗଣ୍ଡ ମତ୍ତକରୀ
ବନ୍ଧନ କି କେବେ ସମ୍ଭବ କୋମଳ ମୃଣାଳର ତନ୍ତୁଧରି ।୧୭।

ମରାଳର ମଞ୍ଜୁ ବିଳାସନିବାସ ସରସିଜ ବନ, ତାରେ
କ୍ରୋଧରେ ଅଧୀର ବିଧାତା ଭାବିଲେ ଧ୍ୱଂସ କରିଦେଇ ପାରେ ।
କ୍ଷୀରନୀର ଭେଦ ବାରି ବାର ଯେଉଁ ମରାଳର କୀର୍ତ୍ତିଯଶ
ଅପହରଣେ ତା ଅସମର୍ଥ ଧାତା ହେଲେ ହେଁ ସେ ପରମେଶ ।୧୮।

କଙ୍କଣ ନୁହଇ ଭୂଷଣ ନରର ଚନ୍ଦ୍ରୋଜ୍ଜ୍ୱଳ ମଣିମାଳ
ନପୁଣ ସୁସ୍ନାନ, ଚନ୍ଦନ କୁସୁମ, ସୁବାସିତ କେଶଜାଳ ।
ବାଣୀ ସୁସଂସ୍କୃତ ପୁରୁଷର ସେ ତ ଅଳଙ୍କାର ସୁଶୋଭନ
ସକଳ ଭୂଷଣ କ୍ଷୟ ହୁଏ, ବାଣୀଭୂଷଣ ଅକ୍ଷୟ ଧନ ।୧୯।

ବିଦ୍ୟା ମାନବର ରୂପ ମନୋହର, ଗୁପ୍ତଧନ ଅଫୁରନ୍ତ
ବିଦ୍ୟା ଭୋଗ ଯଶ ସୁଖଦାୟିନୀ, ବିଦ୍ୟା ଗୁରୁଙ୍କର ଗୁରୁ ସେ ତ ।
ବନ୍ଧୁଜନ ବିଦ୍ୟା ବିଦେଶଗମନେ ପରମଦେବତା ସେହୁ
ବିଦ୍ୟା ରାଜପୂଜ୍ୟ, ଧନ ତ ନୁହଇ, ପଶୁ ବିଦ୍ୟାହୀନ ଯେହୁ ।୨୦।

କ୍ଷମା ଯାର ହୃଦେ କବଚ କି ହେବ, ଶତ୍ରୁ ନର ହେଲେ କ୍ରୋଧୀ
ଜ୍ଞାତିବନ୍ଧୁ ଯହିଁ ବୈଶ୍ୱ କିବା ଲୋଡ଼ା; ମିତ୍ରଥିଲେ ମହୌଷଧି ।
ଖଳ ଯହିଁ ତହିଁ ସର୍ପ କିସ ହେବ, ଧନ ନାହିଁ ବିଦ୍ୟାରାଜେ
ଲଜ୍ଜା ଥିଲେ ଆଭୂଷଣେ କିବା ଲୋଡ଼ା, ସୁକବିର ପୁଣି ରାଜ୍ୟେ ।୨୧।

ସ୍ୱଜନେ ଉଦାର, ପରଜନେ ଦୟା, ଶଠତା ଦୁର୍ଜନପ୍ରତି
ରାଜାରେ ବିନୟ, ସଦାଗ୍ରହ ବିଜ୍ଞଜନଂନ, ସାଧୁଜନେ ପ୍ରୀତି ।
ଶତ୍ରୁପାଶେ ଶୌର୍ଯ୍ୟ, ଗୁରୁଜନେ ଷମା, ପ୍ରବଞ୍ଚନା ନାରୀପ୍ରତି
ଯେ ପୁରୁଷ ଏତେ କଳାରେ କୁଶଳ, ସମାଜେ ଦୃଢ଼ତା ସ୍ଥିତି ।୨୨।

ଜ୍ଞାମୀର ଜଡ଼ତା କରଇ ହରଣ ସିଞ୍ଚେ ବଚନରେ ସତ୍ୟ
ମାନବର ମନ ଉନ୍ନତ କରେ ସେ କରି ପାପ ବିଦୂରିତ ।
ଦିଗେ ଦିଗେ କୀର୍ତ୍ତି ପ୍ରସରେ ସତତ ଚିତ୍ତେ ପ୍ରସନ୍ନତା ଭରେ
ସଜ୍ଜନ ସଂଗତି କି ନକରେ କୁହ ନରର ଏ ଜଗତରେ । ୨୩ ।

ଏମନ୍ତ ଯେ କବିକୁଳ ଶିରୋମଣି ରସସିଦ୍ଧ ପୁଣ୍ୟଶୀଳ
ଯଶରୂପ ତାର ଶରୀରେ ନଜାଣେ ଭୟ ଜରାମରଣର । ୨୪ ।

ସୁତ ସୁଚରିତ୍ର, ସତୀ ପ୍ରିୟତମା, ସ୍ୱାମୀ ଅନୁଗ୍ରହ ପୂର୍ଣ୍ଣ
ମିତ୍ର ସ୍ନେହଶୀଳ, ଅବଞ୍ଚକ ଜ୍ଞାତି, କ୍ଲେଶ ନିଃଶେର୍ଷିତ ମନ ।
ସୌମ୍ୟ କଳେବର, ସ୍ଥିର ବଇଭବ, ବିଦ୍ୟା ବିଭୂଷିତ ମୁଖ
ସ୍ୱର୍ଗବାସୀ ହରି ଯାହାରେ ପ୍ରସନ୍ନ ସେହି ଲଭେ ଏହି ସୁଖ ।୨୫।

ହିଂସାରେ ବିମୁଖ, ମୁଖେ ସତ୍ୟବାଣୀ, ପରଧନେ ଲୋଭହୀନ
ଶକ୍ତିମତେ ଦାନ ସୁସମୟେ, ପରନାରୀ ପ୍ରସଙ୍ଗେ ମଉନ ।
ଆଶାସ୍ରୋତେ ଦୃଢ଼, ଗୁରୁଜନେ ନମ୍ର, ଅନୁକମ୍ପା ସର୍ବଭୂତେ
ସବୁଶାସ୍ତ୍ରେ ଶ୍ରଦ୍ଧା, ନିତ୍ୟକର୍ମରତ, କଲ୍ୟାଣ ସଦା ଏପଥେ । ୨୬ ।

ବିଘ୍ନ ଆଶଂକାରେ ଆରମ୍ଭ ନକରେ କର୍ମ କିଛୁ ନୀଚଜନ
ମଧ୍ୟମ ଆରମ୍ଭକରି କର୍ମ ପରିତ୍ୟାଗ କରେଦେଖି ବିଘ୍ନ ।
ଉତ୍ତମ ଯେ ଜନ ଆରମ୍ଭିଲେ ଥରେ ବାରଂବାର ହେଉ ବିଘ୍ନ
ହତାଶ ହୋଇ ସେ ପରିତ୍ୟାଗ ତାରେ ନକରଇ କଦାଚନ ।୨୭।

ସ୍ୱଳ୍ପ ଧନମଧ୍ୟ ଦୁଷ୍ଟମିତ୍ରଠାରୁ ନ ମାଗେ ମହତଜନ
ନ୍ୟାଯ୍ୟବୃତ୍ତିପ୍ରିୟ ପ୍ରାଣଗଲେ ହେଲେ ନକରଇ ନୀଚକର୍ମ ।
ବିପତ୍ତି ଭିତରେ ଉନ୍ନତ, ମହତଜନ ଆଚରଣ କରେ
ବିଷମ ଅସିର ଧାରେ ଯିବାବ୍ରତ କିଏ ଶିଖାଇଲ ତାରେ ।୨୮।

## ମାନ ଶୌର୍ଯ୍ୟ ପ୍ରଶଂସା

କ୍ଷୁଧା ପ୍ରପୀଡ଼ିତ ଜରାକ୍ରାନ୍ତତନୁ ଶିଥିଳ ଦୁର୍ବଳ ସେହୁ
ତେଜହୀନ ପ୍ରାଣପ୍ରୟାଣ ସମୟ ଉପଗତ ହେଲେ ହେଉ ।
ମତ୍ତଗଜ କୁମ୍ଭବିଦାର ପଲ୍ୱଳ ଭକ୍ଷିବାରେ ଆଶାବାନ
କେଶରୀ ସେ ଅହଂକାରୀ ଅଗ୍ରଗଣ୍ୟ ଭୁଞ୍ଜିଇକ ଶୁଷ୍କତୃଣ । ୨୯ ।

ମାଂସହୀନ ସ୍ୱଳ୍ପସ୍ନାୟୁଚର୍ବିଯୁତ ଗୋରୁହାଡ଼ ଲଭି ଶ୍ୱାନ
ସନ୍ତୁଷ୍ଟ, ତଥାପି ସେଥିରେ ତାହାର କ୍ଷୁଧାନୁହେ ଅବସାନ
ସିଂହ ସନ୍ନିକଟ ଜମ୍ବୁକେ ନମାରି ମାରେ ଯାଇ ଦନ୍ତାବଳ
କଷ୍ଟେପଡ଼ି ନର ନିଜଶକ୍ତିମତେ ଆଚରି ଲଭଇ ଫଳ ।୩୦।

ଅନ୍ନଦାତା ଆଗେ ଲାଙ୍ଗୁଳ ହଲାଇ ପାଦଭାଙ୍ଗି ଭୂଇଁତଳେ
ଲୋଟିପଡ଼ି ଶ୍ୱାନ ଉଦର ବଦନ ଦେଖାଏ ହରଷଭରେ ।
ବାରଣପୁଙ୍ଗବ ଗମ୍ଭୀର ନୟନେ ଧୀରେ ନିରେଖଇ ତାରେ
ଶତ ଚାଟୁବାକ୍ୟ ଅନୁନୟପରେ ଆହାର କବଳ କରେ । ୩୧ ।

ସେହି ପିତା ଜାତ ଜନମିଲେ ଯେ ଯେହୁ ବଂଶ ସମୁନ୍ନତ ହୁଏ
ଏ ପରିବର୍ତ୍ତନଶୀଳ ସଂସାରେ କେ ଜନମି ନମରି ରହେ । ୩୨ ।
କୁସୁମ ସ୍ତବକ ସମଗତି ଭବେ ମନସ୍ୱୀଜନଙ୍କ ହୁଏ ।
ସକଳ ଲୋକଙ୍କ ଶିରଭୂଷା ଅବା ବନେ ଶୁଖି ଝଡ଼ିଯାଏ ।୩୩।

ବୃହସ୍ପତି ଆଦି ସଂଖ୍ୟାବତ ପଞ୍ଚଗ୍ରହ ଥାଉଁ ଆକାଶରେ
ପରାକ୍ରମ ଅହଂକାରୀ ରାହୁ ତାଙ୍କ ବଇର କେବେ ନକରେ ।
ରବି ପ୍ରଭାକର ନିଶା ପ୍ରାଣେଶ୍ୱର ବେନିଙ୍କୁ ସେ କରେ ଗ୍ରାସ
ଦାନବପତି ସେ ରାହୁ, ଯାର ଶିରମାତ୍ର ଅଛି ଅବଶେଷ । ୩୪ ।

ଫଣାଫଳକରେ ବହିଥାଏ ଶେଷନାଗ ଏ ଭୁବନ ଶ୍ରେଣୀ
କମଠପତି ତା ପୃଷ୍ଠେ ଦେଇଠାବ ସେ ନାଗକୁ ବହେ ପୁଣି
କ୍ରୋଡ଼ଗତ କୂର୍ମେ ସ୍ନେହତେଜି ସିନ୍ଧୁ ଶୂକରେ ଆଦର କରେ
ସଜ୍ଜନମାନଙ୍କ ଅସୀମ ଚରିତ୍ର ବିଭୂତି କେ କଳିପାରେ । ୩୫ ।

ପ୍ରଜ୍ୱଳିତ ବହ୍ନି ଶିଖା ସମ ସେହି ମଘବା କୁଳିଶଘାତେ
ପକ୍ଷଚ୍ଛେଦ ପଛେ ହୁଅନ୍ତା ହିମାଦ୍ରିସୁତର ସମର ପ୍ରାନ୍ତେ
ପକ୍ଷହୀନ କ୍ଲେଶବିବଶ ପିତାରେ ତେଜି ନିଜରକ୍ଷା ପାଇଁ
ପୟୋଧିରେ ଭୟେ ଆଶ୍ରୟ ଲୋଡ଼ିବା ଉଚିତ ହେଲା ତ ନାହିଁ ।୩୬।

ଚେତନା ବର୍ଜ୍ଜନେ ସୂର୍ଯ୍ୟକାନ୍ତ ମଣି ପାଦସ୍ପର୍ଶେ ଜଳଉଠେ
ତେଜସ୍ୱୀ ପୁରୁଷ ଅପମାନ ପାଇ ସହିବ ସେ ବା କେମନ୍ତେ ।୩୭।

ମଦୋଦକ୍ଲିନଗଣ୍ଡ ମତ୍ତକରୀପରେ ଝମ୍ପ ପଡ଼େ ସିଂହଶିଶୁ
ଅବସ୍ଥାଭେଦରେ ଅପେକ୍ଷା ନରଖେ ତେଜସ୍ୱୀ ପ୍ରକୃତିବସ୍ତୁ ।୩୮।

ଜାତି ରସାତଳେ ଯାଉ ଗୁଣଗଣ ତା ତହୁଁ ଅତଳ ତଳେ
ଶୀଳ ଶୈଳଶିରୁ ପଡ଼ୁ ପୋଡ଼ନ୍ତୁ ସେ ସ୍ୱଜନ ଜନେ ଅନଳେ ।
ଶୂରତା ଶତ୍ରୁ ତା ଶିରେ ବଜ୍ର ପଡ଼ୁ, ଧନ ମୋ କେବଳ ଥାଉ
ତା ବିନେ ସକଳ ଗୁଣ ତୃଣସମ ଭବେ ତା ସମ କେ ଆଉ ।୩୯।

ସେହି ସେ ଇନ୍ଦ୍ରିୟ ସକଳ ନରର ସେହି ବ୍ୟବହାର ତାର
ଅପ୍ରତିହତ ସେ ବୁଦ୍ଧି ତାର ପୁଣି ସେହି ସେ ବାଣୀ ତାହାର ।
ଧନର ଉଷ୍ମତା ଊଣା ହେଲେ କିନ୍ତୁ କ୍ଷଣକେ ସେହି ସେ ନର
ହୋଇଯାଏ ଆନ, ପରିବର୍ତ୍ତନତା ବିଚିତ୍ରବିଧି ବିଧିର । ୪୦ ।

କୁଳୀନ ସେ ନର ସମାଜେ ଯାହାର ଧନରାଶି ଅକଳନ
ସେହି ତ ପଣ୍ଡିତ ସେହି ପ୍ରଶଂସିତ ଗୁଣଜ୍ଞ ମହତ ଜନ ।
ସେହି ବକ୍ତା ସେହି ସକଳ ଲୋକରେ ଦର୍ଶନୀୟ ସେହି ଭବେ
କାଞ୍ଚନ ଆଶ୍ରିତ ସର୍ବଦା ସଂସାରେ ଯେତେ ଗୁଣଗଣ ସର୍ବେ । ୧।

କୁମନ୍ତ୍ରୀରେ ରାଜା, ଆସକ୍ତିରେ ଯତି, ନାଶ ସୁତ ଲାଳନାରେ
କୃଷି ଅନଧାନେ, କୁପୁତ୍ରରୁ କୁଳ ଅପବ୍ୟୟେ ଧନ ସରେ ।
ଅସେବିଜନେ୍ୟ ମୈତ୍ରୀ, ଅମାତିରେ ବୁଦ୍ଧି, ଶୀଳଖଳ ପୂଜନରେ
ଲଜ୍ଜାମଦ୍ୟେ ନାଶ, ବିପ୍ର ଅପଠନେ, ସ୍ନେହଗଲେ ପ୍ରବାସରେ ।୪୨।

ଦାନ ଭୋଗ ନାଶ, ଧନର ସର୍ବଦା ତ୍ରିବିଧ ଗତି ଜଗତେ
ନଦିଏ ଯେ, ଭୋଗ ନକରେ ତା ଧନ ଗମଇ ତୃତୀୟ ପଥେ ।୪୩।

ଶାଣ ଘଷାମଣି, ସମର ବିଜୟୀ କୃପାଣେ ନିହତ ପୁଣ
ମଦବିଗଳିତ ବାରଣ, ଶରତକୃଶ ସଶ୍ୟତ ପୁଳିନ ।
ସୁରତାନ୍ତେ କ୍ଲାନ୍ତ ନବୀନ ଲଳନା, କ୍ଷୀଣେନ୍ଦୁ ଦ୍ୱିତୀୟାର
ବହୁଦାନେ ରିକ୍ତ ନୃପତି ନିସ୍ପୃହ ହେଲେହେଁ ଶୋଭା ଆଗାର ।୪୪

ନିତାନ୍ତ ନିର୍ଦ୍ଧନ ମୂର୍ତ୍ତିଏ ତଣ୍ଡୁଳ ପାଇଁ ଯେହ୍ନେ ମ୍ଳାନାୟିତ
ସେ ପୁଣି ବିଭବଶାଳୀ ହେଲେ ମଣେ ଧରଣୀରେ ତୃଣବତ ।
ଅବସ୍ଥା ଭେଦରେ ମାନବ ଯେପରି ଗୁରୁ ଲଘୁ ହୁଏ ସେ ତ
ଦ୍ରବ୍ୟ ତଥା ହୁଏ ଅବସ୍ଥା ଭେଦରେ ବିସ୍ତୃତ ବା ସଂକୁଚିତ ।୪୫।

ବସୁନ୍ଧରା ଧେନୁ ଦୋହନେ ହେ ରାଜା ବଳାଉଛ ଯଦି ମନ
ପ୍ରଥମୁ ଏ ତବ ପ୍ରଜାଗଣେ ପାଳ ସେ ଧେନୁ ସନ୍ତାନ ସମ ।
ବତ୍ସାରୂପ ତବ ପ୍ରଜାଙ୍କର ଯେବେ ନିରନ୍ତର ପୁଷ୍ଟି ହେବ
କଳ୍ପଲତା ସମ ଅବନୀ ବିବିଧ ଫଳ ସୁଖେ ପ୍ରସବିବ । ୪୬ ।

କାହିଁ ସତ୍ୟ କାହିଁ ଅସତ୍ୟ କଠୋର କାହିଁ ବା ପ୍ରିୟବାଦିନୀ
କାହିଁ ହିଂସ୍ର ପୁଣି ଦୟାଳୁ କାହିଁ ସେ ଲୋଭୀ ସେ ଉଦାର ପୁଣି ।
କାହିଁ ବହୁବିତ୍ତ ସଂଗ୍ରହକାରିଣୀ ନିତ୍ୟବ୍ୟୟୀ ସଂଚୟିନୀ
ରାଜନୀତି ସେ ତ ସଦା ବହୁରୂପା ଯଥା ବାରବିଳାସିନୀ । ୪୭ ।

ବିଦ୍ୟାକୀର୍ତ୍ତି ଯଶ, ବ୍ରାହ୍ମଣ ପାଳନ, ମିତ୍ରରକ୍ଷା, ଭୋଗ, ଦାନ
ଷଡଗୁଣେ ଯାର ପ୍ରବୃତ୍ତି ନାହିଁ ସେ ରାଜସେବା ଅକାରଣ । ୪୮ ।

ସ୍ୱଳ୍ପ ଅବା ବେଶି ଧନ ଯା ବିଧାତା ଲେଖିଛି ଲଲାଟେ ଥରେ
ମିଳିବ ମରୁରେ ତା ତହୁଁ ଅଧିକ ନମିଳିବ ମେରୁଶିରେ ।
ଧନୀପାଶେ ତେଣୁ ନ ପତାଅ ହାତ ରଙ୍କ ତୋଳ ତବ ଶିର
ଜଳଧିରୁ ଅବା କୂପ ତହୁଁ ଘଟେ ଆସଇ ସମାନ ନୀର । ୪୯ ।

ଚାତକ ଆଧାର ଆହେ ଜଳଧର ଜାଣଇ ଜଗତ ସାରା
ତଥାପି କାପରି ନଶୁଣ ଏ ମୋର ଗୁହାରି ଆରତ ଭରା । ୫୦ ।

ଆରେ ରେ ଚାତକ ସାବଧାନ ମନେ ବାରେ ମୋ ବଚନ ଶୁଣ
ଗଗନେ ଗମନ୍ତି ବହୁମେଘମାଳା ନୁହନ୍ତି ସକଳେ ସମ ।
ବରଷି କେ ବାରି ଭରଇ ଅବନୀ ବୃଥା କେ ଗରଜି ଚଳେ
ଯେତେ ମେଘ ଦେଖୁ ସବୁରି ଆଗେ ତୁ କିଫଳ ଗୁହାରି କଲେ ।୫୧।

## ଦୁର୍ଜ୍ଜନ ନିନ୍ଦା

ପରନାରୀ ପରଧନ ଲୋଭୀ କ୍ରୂର ଅଯଥା କଳହେ ପ୍ରୀତି
ସୁଜନ ସ୍ୱଜନ ପ୍ରତି ଅସହିଷ୍ଣୁ ଦୁରାତ୍ମା ଜନ ପ୍ରକୃତି । ୫୨ ।

ବିଦ୍ୟା ବିଭୂଷିତ ହେଲେହେଁ ଦୁର୍ଜନଜନ ସଙ୍ଗ ପରିହର
ମଣିଗଣେ ଅଲଂକୃତ ହେଲେ ସର୍ପ ନୁହଇକି ଭୟଙ୍କର । ୫୩ ।

ଲଜ୍ଜାବାନେ ଜଡ଼, ଶୁଚିବନ୍ତେ ଶଠ, ଦମ୍ଭୀବ୍ରତକାଙ୍କ୍ଷ ଜନେ
ଶୂର ସେ ନିର୍ଦ୍ଦୟ ସୂକ୍ଷ୍ମ ସେ ତ ମୂର୍ଖ, ଦୀନ ପ୍ରିୟଭାଷୀ ଗଣେ ।
ତେଜସ୍ୱୀରେ ଗର୍ବୀ, ବକ୍ତା ତ ମୁଖର, ସ୍ଥିରଧୀ ଆଳସ୍ୟଯୁତ
ଗୁଣୀଗୁଣ କିବା ଅଛି ଯା ଦୁର୍ଜନ ନକରଇ କଳଂକିତ । ୫୪ ।

ଦୁର୍ଗୁଣ କି ଅଛି ଲୋଭ ତହୁଁ, ପିଶୁନତାଠାରୁ ବଳି ପାପ
ବିମଳ ମନରୁ ବଳି ତୀର୍ଥ କାହିଁ ସତ୍ୟଠାରୁ ବଳି ତପ ।
ସଜ୍ଜନତା ତହୁଁ ସୁଗୁଣ କି ଅଛି ଯଶସ୍ୱୀର ଆଭୂଷଣ
ଅପଯଶ ତହୁଁ ମୃତ୍ୟୁନୁହେ ବଡ଼ ସତ ବିଦ୍ୟାଠାରୁ ଧନ । ୫୫ ।

ଧୂସର ଦିବସ ନଭେ ନିଶାକର, ନାରୀଗତ ଯଉବନ
ସର ସରସୀଜ ବିହୀନ, ସୁନ୍ଦର ନିରକ୍ଷର ମୁଖଧାମ ।
ସଜ୍ଜନ ସତତ ଦୁର୍ଗତି ପୀଡିତ, କୃପଣ ବିଭବଶାଳୀ
ଖଳରତ ନୃପ, ଜଗତେ ଏ ସାତ ହୃଦୟେ ତ ଶେଳଭଳି । ୫୬ ।

ଯେ ରାଜା ପ୍ରଚଣ୍ଡ କ୍ରୋଧୀ ଏ ଜଗତେ ମିତ୍ରତାର କେହି ନୁହେ ।
ହୋମକର୍ତ୍ତା ହୋମ କଲାବେଳେ ବହ୍ନି ଲାଗିଲେ ସେ ଜାଳିଦିଏ ।୫୭।

ମୌନହେଲେ ମୂକ, କହିବାରେ ପଟୁ ବାତୁଳ ବା ବାବଦୂକ
ପାଶେ ବସିଲେ ସେ ଧୃଷ୍ଟ, ଯଦି ଦୂରେ ରହେ ସେ ତ ଅବିବେକ ।
କ୍ଷମାଶୀଳ ଯଦି ଭୀରୁ ସେ ତ, ଅକୁଳୀନ ଅସହିଷ୍ଣୁ ହେଲେ
ସେବାଧର୍ମ ଅତିଗହନ, ଯୋଗୀଙ୍କ ଅଗମ୍ୟ ସେ ତ ସଂସାରେ ।୫୮।

ସଦା ପ୍ରକଟିତ ଖଳପ୍ରକୃତି ଯା ନିରଙ୍କୁଶ ନୀଚଜନ
ମୁକ୍ତକୃତ ସବୁ ଅଧମକର୍ମରେ ସଦା ମନ ଯାର ଲୀନ ।
ଦଇବ ବଶରୁ ବିଭବ ଲଭି ଯେ ଧର୍ମୀରୂପେ ପରିଚିତ
ସଦ୍‌ଗୁଣ ବିଦ୍ୱେଷୀ, ଜନପାଶେ ବସି ବଞ୍ଚିବ କାଳ କେମନ୍ତ ।୫୯।

ଆରମ୍ଭରେ ଦୀର୍ଘ କ୍ରମେ କ୍ଷୀଣୁକ୍ଷୀଣ, ଆଗେ ଲଘୁ ବଢ଼େ ପରେ
ଖଳ ସନ୍ତ ମୈତ୍ରୀ ଦିବସ ପୂର୍ବାର୍ଦ୍ଧ ପରାର୍ଦ୍ଧ ଛାୟା ପ୍ରକାରେ ।୬୦।

ମୃଗ ମୀନ ସନ୍ଥ ତୃଣ ଜଳ ପୁଣି ସନ୍ତୋଷେ ବଞ୍ଚନ୍ତି କାଳ
ତବେ ସେମାନଙ୍କ ଅକାରଣ ବୈରୀ ଲୁବ୍ଧକ, ଧୀବର ଖଳ ॥ ୭୧ ॥

## ସୁଜନ ପ୍ରଶଂସା

ସାଧୁସଂଗ ବାଞ୍ଛା, ପରଗୁଣେ ପ୍ରୀତି, ବିନମ୍ରତା ଗୁରୁଜନେ
ବିଦ୍ୟାରେ ବ୍ୟସନ, ସ୍ୱନାରୀ ସଂଯୋଗ, ଅପବାଦ ଭୟ ମନେ ।
ଶିବେ ଭକ୍ତି, ଶକ୍ତି ଆତ୍ମ ସଂଯମନେ, ଗୃହେ ଖଳ ସଙ୍ଗ ମୁକ୍ତି
ଏସବୁ ନର୍ମଳ ଗୁଣ ଯାହାଠାରେ ତାହାକୁ ମୋର ପ୍ରଣତି ।୭୨॥

ବିପଦ ବେଳେ ଯେ ଧୈର୍ଯ୍ୟ ଧରି ରହେ ବିଭବରେ କ୍ଷମାଶୀଳ
ସଭାସ୍ଥଳେ ଯୁକ୍ତିଯୁକ୍ତ ବାକ୍ୟ କହେ, ସଂଗ୍ରାମେ ବିକ୍ରମୀ ବୀର ।
ସୁଯଶରେ ଯାର ସଦା ଅଭିରୁଚି, ଶ୍ରୁତି ଶାସ୍ତ୍ରେ ସଦା ମନ
ମହାତ୍ମା ଜନଙ୍କ କାଳେ କାଳେ ଜାଣ ପ୍ରକୃତିସିଦ୍ଧ ଏ ଗୁଣ । ୭୩ ।

ଦାନ ଦେଇ, ଦେଲି ବୋଲି ନକହଇ ଗୃହାଗତ ସେବା ବୃତ୍ତି
ଉପକାର କରି ମଉନ, ଯେ କରେ ଉପକାରୀ ଜନ ସ୍ତୁତି
ବିତ୍ତ ଲଭି ଗର୍ବ ନକରଇ କେବେ ପରନିନ୍ଦା ନକରେ ସେ
ଖାଣ୍ଡ ଖଣ୍ଡାଧାରା ବ୍ରତ ସନ୍ଥ ଜନେ ଶିଖାଇଲା ସେ କଏସେ । ୭୪ ।

ଦାନେ ଉର୍ଦ୍ଧ୍ୱ ହସ୍ତ, ଗୁରୁଜନ ପଦେ ପ୍ରଣତ ମସ୍ତକ ଯାର
ସତ୍ୟବାଣୀ ମୁଖେ, ଅତୁଳ ବିକ୍ରମ ସଂଚିତ ବାହୁ ଯୁଗଳ
ସୁସ୍ୱଚ୍ଛହୃଦବୃତ୍ତି, କର୍ଣ୍ଣ ସଦା ଯାର ଶାସ୍ତ୍ରବାଣୀ ଶୁଣି ପ୍ରୀତ
ପ୍ରକୃତ ବିତ୍ତ ଏ ସାଧୁଜନଙ୍କର ଭୂଷଣ, ନଥାଉ ବିତ୍ତ । ୭୫ ।

ସଂପଦଶୀଳ ସେ ସନ୍ଥଜନ ହୃଦ, କମଳୁ କୋମଳତର ।
ବିପଦରେ ମହା ଶଇଳ ଶିଳାରୁ ବଳି ସେ କଠୋରତର ।୭୬ ।

ଉତ୍ତପ୍ତ ଲୁହାରେ ଜଳ ବିନ୍ଦୁ ପଡ଼ି, ସତ୍ତ୍ୱ ଲୋପହୁଏ ତାର
ନଳିନୀ ଦଳରେ ପଡ଼ି ସେ ରାଜଇ ମୁକୁତା ସମ ସୁନ୍ଦର
ସ୍ୱାତିରେ ସାଗର ଶାମୁକାରେ ପଡ଼ି ପାଲଟଇ ସେହୁ ମୋତି
ସଂସର୍ଗ ଗୁଣରେ ଅଧମ, ମଧ୍ୟମ, ଉତ୍ତମ ନରଙ୍କ ଖ୍ୟାତି । ୭୭ ।

ପୁତ୍ର ସେହି ଯେହୁ ପିତା ମନ ତୋଷେ ଆପଣା ଚରିତ୍ର ବଳେ
ପତିହିତ ନିରନ୍ତର ଯେ ବାଞ୍ଛଇ କଳତ୍ର କହି ତାହାରେ
ସେହି ତ ମିତ୍ର ଯେ ସମଭାଗୀ ହୁଏ ସମ୍ପଦରେ ବିପଦରେ
ଜଗତେ ଏତିନ ସଂପଦ କେବଳ ପୁଣ୍ୟବନ୍ତ ଜନେ ମିଳେ । ୬୮ ।

ଏକମାତ୍ର ଦେବ ଉପାସନା କର, କେଶବ ଅବା ଶଙ୍କର
ଯତି ହେଉ ଅବା ଭୂପତି ହେଉ ସେ ଏକମାତ୍ର ମିତ୍ର କର
ଏକତ୍ରିଁ ନିବାସ ବାଞ୍ଛନୀୟ ତାହା ଅରଣ୍ୟ ଅବା ନଗରୀ
ଏକମାତ୍ର ହେଉ ନାରୀ ତବ ସେହୁ ସୁନ୍ଦରୀ ବା ଗିରିଦରୀ । ୬୯ ।

ନମ୍ରତାରେ ତୁଙ୍ଗ, ପରଗୁଣ ଗାନେ ବିକାଶଇ ନିଜ ଗୁଣ
ପର କାର୍ଯ୍ୟ କରି ଯତ୍ନେ, ମଣେ ସେ ନିଜ କାର୍ଯ୍ୟ ସମ୍ପାଦନ
କ୍ଷମା ଗୁଣେ ରୁକ୍ଷ ମୁଖର ଦୁର୍ଜନେ କରଇ ସେ ଅକଳଂକ
ଏମନ୍ତ ଅଚିନ୍ତ୍ୟ ଗତି ସନ୍ଥ ଜନେ ପୂଜନ୍ତି ସକଳ ଲୋକ । ୭୦ ।

ଫଳ ଭରି ଯେବେ ହୁଏ ମହୀରୁହ ସହଜେ ସେ ନଇଁ ପଡ଼େ
ନବ ଜଳଭରା ଜଳଦ ଗଗନୁ କ୍ଷିତିରେ ଅଜାଡ଼ି ପଡ଼େ ।
ସଜ୍ଜନ ତେମନ୍ତେ ସମ୍ପତ୍ତି ଲଭିଲେ ସ୍ୱଭାବେ ବିନମ୍ର ହୋଇ
ପର ଉପକାରୀ ଯେ ଜନ ତାହାର ସହଜ ସ୍ୱଭାବ ଏହି । ୭୧ ।

ଶାସ୍ତ୍ର ବାଣୀ ସିନା କର୍ଣ୍ଣ ଅଳଂକାର, କୁଣ୍ଡଳେ ନଶୋଭେ ସେ ତ
ଦାନ କର୍ମ ହସ୍ତ ଶୋଭନ, ନୁହଇ କଂକଣରେ ହେଲେ ଯୁତ ।
ପର ଉପକାରେ କରୁଣା ସିଂଚିତ କଳେବର ଶୋଭାବନ୍ତ
ଶୋଭା ନହଇ ହେଲେ ସେ କେବଳ ଚନ୍ଦନରେ ବିଲେପିତ । ୭୨ ।

ପାପ କର୍ମୁ କ୍ଷାନ୍ତ କରାଇ ତାହାରେ ହିତକର୍ମେ କରେ ରତ
ଗୁପ୍ତ କଥା ତାର ପ୍ରକଟ ନକରି ଗୁଣ କରେ ପ୍ରକାଶିତ ।
ବିପଦ ବେଳେ ସେ ସଂଗ ନ ତେଜଇ, ଅସମୟେ ଦିଏ ବିତ୍ତ
ଏସବୁ ପ୍ରକୃତ ମିତ୍ରର ଲକ୍ଷଣ ପ୍ରବଦନ୍ତି ସଦା ସନ୍ଥ । ୭୩ ।

ସରସିଜ ଦଳେ ବିକଶିତ କରେ ଅଯାଚିତେ ଦିନକର
ପ୍ରଫୁଲ୍ଲିତ କରେ କୁମୁଦିନୀ କୁଳ ଅଯାଚିତେ ନିଶାକର ।
ବିନା ଯାଚନାରେ ଧରଣୀରେ ଜଳ ବରଷଇ ମେଘମାଳ
ନପୃଚ୍ଛିଲେ ହେଲେ ପରହିତେ ସଦା ସଜ୍ଜନ ହୃଦ ଆକୁଳ । ୭୪ ।

ସତ୍ ପୁରୁଷ ସେହି ପରହିତ ପାଇଁ ସ୍ୱାର୍ଥଦିଏ ଜଳାଞ୍ଜଳି
ସାମାନ୍ୟ ସେ ଯେହୁ ପରହିତ କରେ ତା ସ୍ୱାର୍ଥ ସାର୍ଥକ କରି ।
ନର ରାକ୍ଷସ ସେ ସ୍ୱାର୍ଥ ପାଇଁ ଯେହୁ ପରକାର୍ଯ୍ୟ ବିନାଶଇ
ଅକାରଣେ ତାର, ଅହିତ ଯେ କରେ ସେ କି ଜନ୍ତୁ ନଜାଣଇ । ୭୫ ।

କ୍ଷୀର ସଙ୍ଗେ ନୀର ମିଶିଲେ କ୍ଷୀର ତା ରୂପ ଗୁଣ ତାରେ ଦିଏ
କ୍ଷୀର ତପ୍ତ ହେଲେ ନୀର ନସହିଣ ଅନଳରେ ଝାସ ଦିଏ ।
ମିତ୍ରହିନେ କ୍ଷୀର ଦୁଃଖେ ଦହନରେ ପଶିବାକୁ କରେ ମନ
ଜଳ ସିଞ୍ଚନେ ସେ ଶାନ୍ତ ହୁଏ, ସନ୍ଥ ଜନ ମିତ୍ରତା ଏସନ । ୭୬ ।

ଏପାଟେ କେଶବ ଶୟନ, ସେପାଖେ ତାହାଙ୍କ ବଇରୀ ଦଳ
କାହିଁ ପୁଣି ଶରଣାର୍ଥୀ ଗିରିପୁଞ୍ଜ କାହିଁ ବା ବଡ଼ବାନଳ ।
ସନ୍ତାପିତ କରେ ସାଗର ବକ୍ଷରେ, ସେ ସକଳ ଭାର ସହି
ଅଗାଧ ସିନ୍ଧୁ ସେ ରହେ ଅଚଳ, ପଟାନ୍ତର ତାର ନାହିଁ । ୭୭ ।

ତୃଷ୍ଣା ଛେଦ, ମଦ ତେଜ, ପାପେ ମତି ନଦେଇ କ୍ଷମା ଆଚର
ସତ୍ୟ କହି ସାଧୁଜନ ପଥେ ଚଳ; ବିଦ୍ୟାବନ୍ତ ସେବାକର ।
ମାନନୀୟେ ନମ, ବୈରୀରେ ବିନୟ, ପ୍ରକାଶ ଆପଣା ଗୁଣ
କୀର୍ତ୍ତି ରଖ, ଦୁଃଖୀଠାରେ ଦୟାକର, ଏସବୁ ସନ୍ଥ ଲକ୍ଷଣ । ୭୮ ।

ଶରୀର ବଚନ ମନ ପରିପୂର୍ଣ୍ଣ ପୁଣ୍ୟ ପୀୟୂଷରେ ସେ ତ
ତ୍ରିଭୁବନ ଜନେ ଉପକାର କରି ରଖେ ସଦା ପରିତୃପ୍ତ ।
ପରମାଣୁ ସମ ପରଗୁଣ ଦେଖେ ପର୍ବତ ଆକାରେ ନିତ୍ୟ
ପ୍ରଫୁଲ୍ଲ ହୃଦୟେ ବିତରଇ ନିତ୍ୟ ବିରଳ ଏସନ ସନ୍ଥ । ୭୯ ।

ହେମଗିରି ତଥା ରଜତ ଶଇଳ ହୁଅନ୍ତୁ ସେ ଗିରିବର
ତଦାଶ୍ରିତ ତରୁ ସେହି ତରୁ ହୋଇ ରହନ୍ତୁ ସେ ଚିରକାଳ ।
ପ୍ରଶଂସା ଯୋଗ୍ୟ ସେ ମଳୟ ପର୍ବତ ଆଶ୍ରା କରି ଯାରେ ସେ ତ
କଙ୍କୋଳ, କୁଟଜ, ନିମ୍ବ ପାଲଟନ୍ତି ଶ୍ରୀଚନ୍ଦନ ସୁବାସିତ । ୮୦ ।

## ଧୈର୍ଯ୍ୟ ପ୍ରଶଂସା

ଅମୂଲ୍ୟ ରତନ ଲଭି ଦେବଗଣ ସନ୍ତୋଷ ନଲଭି ତହିଁ
ସିନ୍ଧୁ ଦେଖି ଭୀମ ହଳାହଳ ଦେଖି ତଳେ ଭୟଭୀତ ନୋହି ।
ପୀୟୂଷ ପାଇବା ଯାଏ ସେ କରନ୍ତି ମନ୍ଥନ ବିରାମ ହୀନ
ସଙ୍କଳ୍ପ ସିଦ୍ଧ ନହେଲେ ବିରାମ ନକରନ୍ତି ଧୀରଜନ । ୮୧ ।

କେବେ ଭୂମିତଳେ ଶୟନ କେବେ ବା ଶୟନ ପଲ୍ଂକ ପରେ
କେବେ ଶାକାହାର, ରୁଚ ପୁଣି କେବେ ଶାଳୀ ଅନ୍ନ ବ୍ୟଂଜନରେ ।
କେବେ କଂଥାଧାରୀ କେବେ ପୁଣି ସେହୁ ସୁନ୍ଦବ୍ୟ ବସନଧାରୀ
ମନସ୍ୱୀ କାର୍ଯ୍ୟାର୍ଥୀ ସୁଖ ଅବା ଦୁଃଖ ନଗଣେ ପଥେ ତାହାର । ୮୨ ।

ସଜ୍ଜନତା ଅଇଶ୍ୱର୍ଯ୍ୟର ଭୂଷଣ ଶୂରର ବାକ୍ୟ ସଂଯମ
ଜ୍ଞାନେ ଶମ, ଶାସ୍ତ୍ର ପଠନେ ବିନୟ, ଧନ ସୁପାତ୍ରରେ ଦାନ ।
ତପସ୍ୟାରେ ଶାନ୍ତି, ପ୍ରଭୁପଣେ କ୍ଷମା, ଧର୍ମକର୍ମେ ନିଷ୍ଠାଳତା
ସବୁ ଜନଙ୍କର ସକଳ ଗୁଣର ଭୂଷଣଶୀଳ ସର୍ବଥା । ୮୩ ।

ନୀତିବାଦୀଙ୍କର ନିନ୍ଦା ସେ କରନ୍ତୁ ଅଥବା କରନ୍ତୁ ସ୍ତୁତି
ବିପୁଳ ବିଭବ ବୃଦ୍ଧି ହେଉ ଅବା ସରୁ ସକଳ ସମ୍ପତ୍ତି ।
ଆଜ ହେଉ ମୃତ୍ୟୁ ଅଥବା ମରଣ ଆସୁ ଯୁଗାନ୍ତରେ ସେ ତ
ନ୍ୟାଯ୍ୟ ପଥୁ ଧୀର ଜନ ବିଚଳିତ ନହୁଅନ୍ତି କଦାଚିତ । ୮୪ ।

ପେଟିକା ଆବଦ୍ଧ ହତାଶ ଦୁର୍ବଳ ତନୁ କ୍ଷୁଧା ପ୍ରପୀଡ଼ିତ
ସର୍ପମୁଖେ କାଟି ପେଟିକା ମୂଷିକ ରାତ୍ରେ ଆପେ ଉପସ୍ଥିତ ।
ମାଂସ ଭକ୍ଷି ସୁଖେ ସେହି ଛିଦ୍ର ଦେଇ ସର୍ପ ଚଳେ ଅବିଳମ୍ବେ
ଲୋକଙ୍କ ପତନ ଅଭ୍ୟୁଦୟ ସଦା କାରଣ ଦୈବ ଏ ଭବେ । ୮୫ ।

କରାଘାତେ ଯଥା କନ୍ଦୂକ କ୍ଷିତିରେ ପଡ଼ି ଉପରକୁ ଉଠେ
ସାଧୁ ଜନଙ୍କର ବିପତ୍ତି ତେମନ୍ତେ ସ୍ଥାୟୀ ନହୋଇ ସେ ଛୁଟେ । ୮୬ ।

ଆଳସ୍ୟ ହିଁ ସେ ତ ମାନବ ଶରୀରେ ରିପୁ ମହା ବଳବନ୍ତ
ବନ୍ଧୁ ନାହିଁ ଆନ ଉଦ୍ୟୋଗ ସମ ଯା କରନ୍ତୁଏ ଦୁଃଖ ଅନ୍ତ । ୮୭ ।

ଛିନ୍ନ ତରୁ ପୁଣି ଫଳବନ୍ତ ହୁଏ କ୍ଷୀଣଚନ୍ଦ୍ର ପରିପୂର୍ଣ୍ଣ
ବିପତ୍ତିରେ ସନ୍ଥ ଜାଣି ନହୁଅନ୍ତି କେବେ ସନ୍ତାପିତ ମନ । ୮୮ ।

## ଦୈବ ପ୍ରଶଂସା

ବୃହସ୍ପତି ଯାର ସଚିବ, ଆୟୁଧ ବଜ୍ର, ସେନା ଦେବଗଣ
ସ୍ୱର୍ଗ ଯାର ଦୁର୍ଗ, ଯାନ ଐରାବତ, ବିଷ୍ଣୁ ଅନୁଗ୍ରହ ପୂର୍ଣ୍ଣ ।
ଏତେ ଅଇଶ୍ୱର୍ଯ୍ୟ ବଳେ ବଳୀ ଇନ୍ଦ୍ର, ଅସୁରଙ୍କୁ ହାରେ ରଣେ
ଦଇବ କେବଳ ଶରଣ, ଧିକ ଏ ବୃଥା ପଉରୁଷ ପଣେ । ୮୯ ।

କର୍ମ ଅନୁଯାଇ ଫଳ, ବୁଦ୍ଧି ସଦା ଦଇବର ଅନୁଗାମୀ
ତଥାପି ବିଜ୍ଞର ବୁଦ୍ଧି ନିତକର୍ମ କରିଥାନ୍ତି ସୁଧୀଜ୍ଞାନୀ । ୯୦ ।

ଲୁଣ୍ଠିତ ମୁଣ୍ଡ ସେ ପ୍ରଚଣ୍ଡ ଆତପେ ଅତି ସନ୍ତାପିତ ଶିରେ
ଛାୟା ଖୋଜି ଖୋଜି ଦଇବ ବଶରୁ ପ୍ରବେଶିଲା ତାଳ ମୂଳେ
ତହିଁ ପୁଣି ମୁଣ୍ଡେ ମହାଫଳ ପଡ଼ି ସଶବ୍ଦେ ଫାଟିଲା ଶିର
ଭାଗ୍ୟହୀନ ଯହିଁ ଯାଏ ସଙ୍ଗେ ସଙ୍ଗେ ବିପଦ ଗମନ୍ତି ତାର । ୯୧ ।

ଶଶି ସୂର୍ଯ୍ୟଙ୍କର ଗ୍ରହପୀଡ଼ା ଦେଖି ଭୁଜଙ୍ଗ ଗଜବନ୍ଧନ
ଜ୍ଞାନୀଙ୍କୁ ନିର୍ଦ୍ଧନ ବିଲୋକି ଭାବେ ମୁଁ ଦଇବ ହିଁ ବଳବାନ । ୯୨ ।

ସୃଷ୍ଟି କରି ଭବେ ସଂସାର ଭୂଷଣ ନରରତ୍ନ ଗୁଣାକର
ନିର୍ବୋଧ ବିଧାତା କଲା ତାରେ ଆହା କ୍ଷଣଭଙ୍ଗୁର ଶରୀର । ୯୩ ।

କରୀର ବିଟପେ ପଲ୍ଲବ ନହେଲେ ବସନ୍ତର ଦୋଷ କିବା
ଦିବସେ ଉଲୂକ ଦେଖି ନପାରିଲେ ରବିରେ ଦୋଷ କି ଦେବା ।
ଚାତକର ମୁଖେ ବାରି ନପଡ଼ିଲେ ଦୋଷ କି ସେ ବାରିଦର
ବିଧିଯାହା ପୂର୍ବେ ଲଲାଟେ ଲେଖିଛି କେ କରିବ ଆନ ତାର । ୯୪ ।

## କର୍ମ ପ୍ରଶଂସା

ଦେବତା ନମସ୍ୟ ଯେଣୁ ବିଧିବଶ, ବିଧାତାକୁ ନମସ୍କାର
ପୂର୍ବକୃତକର୍ମ ଅନୁସରି ବିଧି ଦିଏ ସିନା କର୍ମଫଳ ।
କର୍ମଫଳ, ବିଧି ଉଭୟେ ଯେହେତୁ କର୍ମର ଆୟତ୍ତାଧୀନ
ଦେବତା ଓ ବିଧି ସର୍ବେ କର୍ମାଧୀନ, କର୍ମକୁ ମୋର ପ୍ରଣାମ । ୯୫ ।

ଯା ହେତୁ କୁମ୍ଭାରସମ ବ୍ରହ୍ମା ବସି ସୃଜଇ ବ୍ରହ୍ମାଣ୍ଡ ନିତି
ଦଶ ଅବତାର ଧରି ବିଷ୍ଣୁ ମହା ସଙ୍କଟରେ ସଢ଼ୁଛନ୍ତି ।
କପାଳ ଫାଳେ ସେ କରେ ଧରି ଭିକ୍ଷା ମାଗି ବୁଲୁଛନ୍ତି ହର
ଭ୍ରମୁଛନ୍ତି ନିତନିତ ନଭେ ରବି, ସେ କର୍ମକୁ ନମସ୍କାର । ୯୬ ।

ରୂପ ମନୋହର କିବା କୁଳଶୀଳ ସବୁହୁଏ ଅକାରଣ
ବିଦ୍ୟା ମଧ୍ୟ ଫଳ ଦିଏ ନାହିଁ କିଛି, ଅବା ସେବା ସଯତନ ।
ପୂର୍ବକୃତତପପୁଞ୍ଜ ଭାଗ୍ୟେ ଯାହା ସଂଚିତଥିବ କେବଳ
କାଳେ ମାନବର ଜୀବନେ ସେ ଫଳ ମିଳେ ଯଥା ବୃକ୍ଷଫଳ ।୯୭।

ବନେ, ରଣେ, ଜଳେ, ସାଗର, ଅନଳେ, ଶତ୍ରୁମଧ୍ୟେ, ଗିରିଶିରେ,
ସୁପ୍ତ ଅତର୍କିତ ଦୁଃସ୍ଥିତରେ ପୂର୍ବକୃତ ପୁଣ୍ୟ ରକ୍ଷାକରେ । ୯୮ ।

ଦୁଷ୍ଟଜନେ ସାଧୁ, ମୂର୍ଖେ ଜ୍ଞାନୀ, ପୁଣି ମିତ୍ରକରେ ବଇରରେ
ଗରଳେ ପୀୟୂଷ କରେ, ଗୁପ୍ତସବୁ ପ୍ରକଟ ଯା ପ୍ରଭାବରେ,
ବାଞ୍ଛାଫଳ ଭୋଗ କର ସେବି ସେହି ସତ୍‌କର୍ମ ଭଗବନ୍ତ
ବୃଥାଶ୍ରମେ ସାଧୁ ବହୁଗୁଣ ଲଭ ସାଧନାରେ ନୁହ ବ୍ରତୀ । ୯୯ ।

ସୁଗୁଣ ଅଥବା ଦୁର୍ଗୁଣଯୁକ୍ତ ସେ କର୍ମାରମ୍ଭ କଲାବେଳେ
ପରିଣାମ ତାର ସଯତ୍ନେ ବିଚାର କରନ୍ତି ପଣ୍ଡିତ ନରେ ।
ବିଚାର ବିହୂନେ ଅତି ଉତ୍ସାହରେ କର୍ମାରମ୍ଭ ଯଦି ହୁଏ
ଜୀବଥିବାଯାଏ ଶେଲସମ ହୃଦେ ଅହରହ ପୀଡ଼ା ଦିଏ । ୧୦୦ ।

ଅଭାଗା ସେ ନର ନକରେ ଯେ ତପ ଜନମି ଏ କର୍ମକ୍ଷେତ୍ରେ
ଚନ୍ଦନ ଇନ୍ଧନେ ରାନ୍ଧଇ ରସୁଣ ମରକତ ମଣି ପାତ୍ରେ ।
ରୋପିବାକୁ ଅର୍କବିଟପ ସୁବର୍ଣ୍ଣ ଲଙ୍ଗଳେ ବସୁଧା ଚିରେ
କର୍ପୂର ତରୁ ସେ ଛେଦି କୋଦକ୍ଷେତ୍ର ପାଇଁ ଆବରଣ କରେ ।୧୦୧

ସିନ୍ଧୁଜଳେ ବୁଡ଼, ଚଢ଼ ମେରୁଶିରେ, ଶତ୍ରୁଜିଣ କର ରଣ
ବାଣିଜ୍ୟ ବା କୃଷି, କଳା, ସେବା, ବିଦ୍ୟା ସବୁରେ ହୁଏ ପ୍ରବୀଣ ।
ସୁବିପୁଳ ନଭେ ଖଗସମ ଉଡ଼ କର ଯତ୍ନ ଯେତେ ପାର
ଅଭାବିତ କିଛି ନହୁଏ ଏଭବେ କର୍ମବଶ ସବୁ ଫଳ । ୧୦୨ ।

ଭୀଷଣ ଅରଣ୍ୟ ତାହାପାଇଁ ହୁଏ ସୁରମ୍ୟ ନଗର ଧାମ
ଜଗତେ ସକଳ ପ୍ରାଣୀ ତାର ମିତ୍ର ସତତ ସ୍ନେହ ଅଧୀନ ।
ସକଳ ଜଗତ ତା ପାଇଁ ସତତ ବଇଭବ ରତ୍ନ ପୂର୍ଣ୍ଣ
ଏମନ୍ତ ସେ ନର ପୂର୍ବକୃତ ଯାର ସଂଚିତ ବିପୁଳ ପୁଣ୍ୟ । ୧୦୩ ।

ଲାଭ ସେ ତ ଗୁଣୀଜନଙ୍କ ସଂଗମ, ଦୁଃଖ ମୂର୍ଖସହବାସ
ହାନିବେଳ ବିଚ୍ୟୁତରେ, ନିପୁଣତା ଧର୍ମରେ ଦୃଢ଼ ବିଶ୍ୱାସ
ଶୂର ସେ ତ ଜିତେନ୍ଦ୍ରିୟ ଯେହୁ ଅନୁବ୍ରତା ନାରୀ, ବିଦ୍ୟା ଧନ,
ସୁଖ ଅପ୍ରବାସ, ରାଜ୍ୟ ସେ ତ ଯହିଁ ରାଜାଜ୍ଞା ହୁଏ ପାଳନ । ୧୦୪ ।

ଅପ୍ରିୟ ବଚନେ ଦରିଦ୍ର ସେ କିନ୍ତୁ ପ୍ରିୟ ବଚନରେ ଧନୀ
ସ୍ୱଦାର ପ୍ରେୟସୀ ପ୍ରୀତିରେ ସତତ ପରିତୁଷ୍ଟ ରହେ ପୁଣି
ପର ଅପବାଦ କରନି ଜୀବନେ ସୁପୁରୁଷ ଧୀର ସେ ତ
କେବେ କେଉଁ ବକ୍ଷେ ଧରି ତାରେ ବସୁନ୍ଧରା ହୁଏ ଵିମଣ୍ଡିତ । ୧୦୫ ।

ପ୍ରପୀଡ଼ିତ ଯଦି ଧୈର୍ଯ୍ୟଶାଳୀ ହୁଏ ଧୈର୍ଯ୍ୟକେ ଟାଳିବ ତାର
ଅଧୋମୁଖ କଲେ ପ୍ରଜ୍ୱଳିତ ବହ୍ନି ଊର୍ଦ୍ଧ୍ୱେ ଉଠେ ଶିଖା ତାର ।୧୦୬।

କାମିନୀ କଟାକ୍ଷ ବିଶିଖ ପ୍ରହାରେ କ୍ଷତ ନୁହେ ଚିତ୍ତ ଯାର
ହୃଦୟ କଦାପି ଦହନ ନ ହୁଇ କ୍ରୋଧାନଳ ତାପେ ଘୋର
ଇନ୍ଦ୍ରିୟ ବିଷୟ ଲୋଭ ପାଶେ ଯାର ମନ ନୁହେ ଆକର୍ଷିତ
ତ୍ରିଲୋକ ଯାକ:ର ସବୁ ଜୟ କରିପାରେ ସେହି ଧୀରଚିତ୍ତ । ୧୦୭ ।

ଶୂର ସେ ଏକାକୀ ସାରା ସଂସାରକୁ ପଦତଳେ ବନ୍ଦୀକରେ
ଏକାକୀ ଯଥା ସେ ରବି ଉଦ୍ଭାସିତ କରାଇ ବିଶ୍ୱସଂସାରେ । ୧୦୮ ।

ବହ୍ନି ତାରେ ଲାଗେ ସଳିଳ ସମାନ ସିନ୍ଧୁ ସ୍ରୋତସ୍ୱିନୀ କ୍ଷୀଣ
ମେରୁଲଘୁଶିଳାଖଣ୍ଡପ୍ରାୟ, ମୃଗପତି କୁରଙ୍ଗମ ସମ ।
ସର୍ପ ତାହାପାଇଁ କୁସୁମର ମାଳା, ହଳାହଳ ସୁଧାଧାରା
ଅଙ୍ଗେ ଯାର ଉଦ୍ଭାସିତ ସୁଶୀଳତା ବିଶ୍ୱବିମୋହନକରା । ୧୦୯ ।

ଲଜ୍ଜାଆଦି ଯେତେ ସଦ୍‌ଗୁଣ ସବୁର ସ୍ୱାଭାବିକ ଜନୟିତା
ସ୍ୱଜନମାନ ହୃତ ଅତ୍ୟନ୍ତ ବିଶୁଦ୍ଧ ସମ ସେ ମହିମାନ୍ୱିତା
ସଦା ସ୍ୱାଧୀନ ସେ ଅଟଳ ପ୍ରତିଜ୍ଞ ମନସ୍ୱୀ ସେ ସତ୍ୟବ୍ରତ
ନର ନ ତେଜଇ ଜୀବନ ବିପନ୍ନ ହେଉ ଅବା ଯାଉ ସେ ତ ।୧୧୦।



ଦିକ୍‌କାଳାଦ୍ୟନବଚ୍ଛିନ୍ନା ନନ୍ତ ଚିନ୍ମାତ୍ରମୂର୍ତ୍ତୟେ
ଅନୁଭୂତ୍ୟେକସାରାୟ ନମଃ ଶାନ୍ତାୟ ତେଜସେ । ୧ ।

ଯାଂ ଚିନ୍ତୟାମି ସତତଂ ମୟି ସା ବିରକ୍ତା
ସାପ୍ୟନ୍ୟମିଚ୍ଛତି ଜନଂ ସ ଜନୋଽନ୍ୟସକ୍ତଃ
ଅସ୍ମତ୍‌କୃତେ ଚ ପରିତୁଷ୍ୟତି କାଚିଦନ୍ୟା
ଧିକ୍ତାଂ ଚ ତଂ ଚ ମଦନଂ ଚ ଇମାଂ ଚ । ୨ ।

ଅଜ୍ଞଃ ସୁଖମାରାଧ୍ୟଃ ସୁଖତରମାରାଧ୍ୟତେ ବିଶେଷଜ୍ଞଃ
ଜ୍ଞାନଲବଦୁର୍ବିଦଗ୍ଧଂ ବ୍ରହ୍ମାପିତଂ ନରଂ ନ ରଂଜୟତି । ୩ ।

ପ୍ରସହ୍ୟ ମଣିମୁଦ୍ଧରେନ୍ମକର ବକ୍ତ୍ରଦଂଷ୍ଟ୍ରାଂକୁରା-
ତ୍ସମୁଦ୍ରମପି ସନ୍ତରେତ୍ପ୍ରଚଳଦୂର୍ମିମାଳାକୁଳମ୍
ଭୁଜଙ୍ଗମପି କୋପିତଂ ଶିରସି ପୁଷ୍ପବଦ୍ଧାରୟେ-
ନ୍ନ ତୁ ପ୍ରତିନିବିଷ୍ଟମୂର୍ଖଜନ ଚିତ୍ତମାରାଧୟେତ୍ । ୪ ।

ଲଭେତ ସିକତାସୁ ତୈଳମପି ଯତ୍ନତଃ ପୀଡୟନ୍
ପିବେଚ୍ଚ ମୃଗତୃଷ୍ଣିକାସୁ ସଲିଳଂ ପିପାସାର୍ଦ୍ଦିତଃ ।
କଦାଚିଦପି ପର୍ଯ୍ୟଟଂଛଶବିଷାଣମାସାଦୟେ-
ନ୍ନତୁ ପ୍ରତିନିବିଷ୍ଟମୂର୍ଖଜନଚିତ୍ତ ମାରାଧୟେତ୍ । ୫ ।

ବ୍ୟାଳଂ ବାଳମୃଣାଳତନ୍ତୁଭିରସୌ ରୋଦ୍ଧୁଂ ସମୁଜ୍ଜୃମ୍ଭତେ
ଛେତ୍ତୁଂ ବଜ୍ରମଣିଂଛିରୀଷକୁସୁମପ୍ରାନ୍ତେନ ସନ୍ନହ୍ୟତେ
ମାଧୁର୍ଯ୍ୟଂ ମଧୁବିନ୍ଦୁନା ରଚୟିତୁଂ କ୍ଷାରାମ୍ବୁଧେ ରୀହତେ
ନେତୁଂ ବାଞ୍ଛତି ଯଃ ଖଳାନ୍ ପଥି ସତାଂ ସୂକ୍ତୈଃ ସୁଧାସ୍ୟନ୍ଦିଭିଃ । ୬ ।

ସ୍ୱାୟତ୍ତମେକାନ୍ତଗୁଣଂ ବିଧାତ୍ରା ବିନିର୍ମ୍ମିତଂ ଛାଦନମଜ୍ଞତାୟାଃ
ବିଶେଷତଃ ସର୍ବ୍ବବିଦାଂ ସମାଜେ ବିଭୂଷଣଂ ମୌନମଣ୍ଡିତାନାମ୍ । ୭ ।

ଯଦା କିଂଚିଜ୍ଜ୍ଞୋଽହଂ ଦ୍ୱିପଇବ ମଦାନ୍ଧଃ ସମଭବଂ
ତଦା ସର୍ବ୍ବଜ୍ଞୋଽସ୍ମୀତ୍ୟଭବଦବଳିପ୍ତଂ ମମ ମନଃ
ଯଦା କିଞ୍ଚିତ୍ କିଞ୍ଚିଦ୍ବୁଧଜନସକାଶାଦବଗତଂ
ତଦାମୂର୍ଖୋଽସ୍ମୀତି ଜ୍ୱରଇବ ମଦୋ ମେ ବ୍ୟପଗତଃ । ୮ ।

କୃମିକୁଳଚିତଂ ଲାଲାକ୍ଲିନ୍ନଂ ବିଗନ୍ଧି ଜୁଗୁପ୍‌ସିତଂ
ନିରୁପମରସଂ ପ୍ରୀତ୍ୟା ଖାଦନ୍ନରାସ୍ଥି ନିରାମିଷମ୍
ସୁରପତିମପି ଶ୍ୱା ପାର୍ଶ୍ୱସ୍ଥଂ ବିଲୋକ୍ୟ ନ ଶଙ୍କତେ
ନ ହି ଗଣୟତି କ୍ଷୁଦ୍ରୋ ଜନ୍ତୁଃ ପରିଗ୍ରହଫଲ୍‌ଗୁତାମ୍ । ୯ ।

ଶିରଶାର୍ବଂ ସ୍ୱର୍ଗାତ୍‌ପତତି ଶିରସସ୍ତତ୍‌କ୍ଷିତିଧରଂ
ମହୀଧ୍ରାଦୁତ୍ତୁଙ୍ଗାଦବନିମବନେଶ୍ଚାପି ଜଲଧିମ୍
ଅଧୋଗଙ୍ଗା ସେୟଂ ପଦମୁପଗତା ସ୍ତୋକମଥବା
ବିବେକଭ୍ରଷ୍ଟାନାଂ ଭବତି ବିନିପାତଃ ଶତମୁଖଃ । ୧୦ ।

ଶକ୍ୟୋ ବାରୟିତୁଂ ଜଲେନ ହୁତଭୁକ୍ ଛତ୍ରେଣ ସୂର୍ଯ୍ୟାତପୋ
ନାଗେନ୍ଦ୍ରୋ ନିଶିତାଙ୍କୁଶେନ ସମଦୋ ଦଣ୍ଡେନ ଗୋଗର୍ଦ୍ଦଭୌ
ବ୍ୟାଧିର୍ଭେଷଜସଂଗ୍ରହୈଶ୍ଚ ବିବିଧୈର୍ମନ୍ତ୍ରପ୍ରୟୋଗୈର୍ବିଷଂ
ସର୍ବସ୍ୟୌଷଧମସ୍ତି ଶାସ୍ତ୍ରବିହିତଂ ମୂର୍ଖସ୍ୟ ନାସ୍ତ୍ୟୌଷଧମ୍ । ୧୧ ।

ସାହିତ୍ୟ ସଙ୍ଗୀତକଳାବିହୀନଃ ସାକ୍ଷାତ୍‌ପଶୁଃ ପୁଚ୍ଛବିଷାଣହୀନଃ
ତୃଣଂ ନ ଖାଦନ୍ନପି ଜୀବମାନସ୍ତଦ୍ଭାଗଧେୟଂ ପରମଂ ପଶୂନାମ୍ । ୧୨ ।

ବରଂ ପର୍ବତ ଦୁର୍ଗେଷୁ ଭ୍ରାନ୍ତଂ ବନଚରୈଃ ସହ
ନ ମୂର୍ଖଜନ ସଂପର୍କଃ ସୁରେନ୍ଦ୍ର ଭବନେଷ୍ୱପି । ୧୩ ।

ଯେଷାଂ ନ ବିଦ୍ୟା ନ ତପୋ ନ ଦାନଂ ଜ୍ଞାନଂ ନ ଶୀଲଂ ନ ଗୁଣୋ ନ ଧର୍ମଃ
ତେ ମର୍ତ୍ତ୍ୟଲୋକେ ଭୁବିଭାରଭୂତା ମନୁଷ୍ୟରୂପେଣ ମୃଗାଶ୍ଚରନ୍ତି । ୧୪ ।

ଶାସ୍ତ୍ରୋପସ୍କୃତଶବ୍ଦସୁନ୍ଦରଗିରଃ ଶିଷ୍ୟପ୍ରଦେୟାଗମାଃ
ବିଖ୍ୟାତାଃ କବୟୋ ବସନ୍ତି ବିଷୟେ ଯସ୍ୟ ପ୍ରଭୋର୍ନିର୍ଧନାଃ
ତଜ୍ଜାଡ୍ୟଂ ବସୁଧାଧିପସ୍ୟ କବୟୋ ହ୍ୟର୍ଥଂ ବିନାପୀଶ୍ୱରାଃ
କୁତ୍ସ୍ୟାଃ ସ୍ୟୁଃ କୁପରୀକ୍ଷକା ହି ମଣୟୋ ଯୈରର୍ଘତଃ ପାତିତାଃ ।୧୫।

ହର୍ତ୍ତୁର୍ଯ୍ୟାତି ନ ଗୋଚରଂ କମପିଶଂ ପୁଷ୍ଣାତିଯତ୍‌ସର୍ବଦା
ହ୍ୟର୍ଥିଭ୍ୟଃ ପ୍ରତିପାଦ୍ୟମାନମନିଶଂ ପ୍ରାପ୍ନୋତି ବୃଦ୍ଧିଂ ପରାମ୍
କଲ୍ପାନ୍ତେଷ୍ୱପି ନ ପ୍ରୟାତି ନିଧନଂ ବିଦ୍ୟାଖ୍ୟମନ୍ତର୍ଦ୍ଧନଂ
ଯେଷାଂ ତାନ୍ ପ୍ରତି ମାନମୁଜ୍‌ଝତ ନୃପାଃ କସ୍ତୈଃ ସହ ସ୍ପର୍ଦ୍ଧତେ । ୧୬ ।

ଅଧିଗତପରମାର୍ଥାନ୍ ପଣ୍ଡିତାନ୍ ମାବମଂସ୍ଥା-
ସ୍ତୃଣମିବ ଲଘୁ ଲକ୍ଷ୍ମୀର୍ନୈବ ତାନ୍ ସଂରୁଣଦ୍ଧି
ଅଭିନବମଦଲେଖା ଶ୍ୟାମଗଣ୍ଡସ୍ଥଲାନାଂ
ନ ଭବତି ବିଷତନ୍ତୁର୍ବାରଣଂ ବାରୁଣାନାମ୍ । ୧୭ ।

ଅମ୍ଭୋଜିନୀବନନିବାସବିଳାସମେବ
ହଂସସ୍ୟ ହନ୍ତି ନିତରାଂ କୁପିତୋ ବିଧାତା
ନ ତ୍ୱସ୍ୟ ଦୁଗ୍ଧଜଳଭେଦବିଧୌ ପ୍ରସିଦ୍ଧାଂ
ବୈଦଗ୍ଧ୍ୟକୀର୍ତ୍ତିମପହର୍ତ୍ତୁମସୌ ସମର୍ଥଃ । ୧୮ ।

କେୟୂର ନ ବିଭୂଷୟନ୍ତି ପୁରୁଷଂ ହାରାନ ଚନ୍ଦ୍ରୋଜ୍ଜ୍ୱଳା
ନ ସ୍ନାନଂ ନ ବିଲେପନଂ ନ କୁସୁମଂ ନାଲଂକୃତା ମୂର୍ଦ୍ଧଜା
ବାଣ୍ୟେକା ସମଲଂକରୋତି ପୁରୁଷଂ ୟା ସଂସ୍କୃତା ଧାର୍ୟ୍ୟତେ
କ୍ଷୀୟନ୍ତେ ଽଖିଳଭୂଷଣାନି ସତତଂ ବାଗ୍‌ଭୂଷଣମ୍ ଭୂଷଣମ୍ । ୧୯ ।

ବିଦ୍ୟାନାମ ନରସ୍ୟ ରୂପମଧିକଂ ପ୍ରଚ୍ଛନ୍ନଗୁପ୍ତଂ ଧନଂ
ବିଦ୍ୟାଭୋଗକରୀ ୟଶଃସୁଖକରୀ ବିଦ୍ୟାଗୁରୁଣାଂ ଗୁରୁଃ
ବିଦ୍ୟାବନ୍ଧୁଜନୋ ବିଦେଶଗମନେ ବିଦ୍ୟାପରଂ ଦୈବତଂ
ବିଦ୍ୟାରାଜସୁପୂଜିତା ନ ତୁ ଧନଂ ବିଦ୍ୟାବିହୀନଃ ପଶୁଃ । ୨୦ ।

କ୍ଷାନ୍ତିଶ୍ଚେତ୍କବଚେନ କିଂ କିମରିଭିଃ କ୍ରୋଧୋଽସ୍ତି ଚେଦ୍ଦେହିନା
ଜ୍ଞାତିଶ୍ଚେଦନଳେନ କିଂ ୟଦି ସୁହୃଦ୍ ଦିବ୍ୟୌଷଧୈଃ କିଂ ଫଳମ୍
କିଂ ସର୍ପୈର୍ୟଦି ଦୁର୍ଜନାଃ କିମୁଧନୈର୍ବିଦ୍ୟାଽନବଦ୍ୟାୟଦି
ବ୍ରୀଡାଚେତ୍କିମୁ ଭୂଷଣୈଃ ସୁକବିତାୟଦ୍ୟସ୍ତି ରାଜ୍ୟେନକିମ୍ । ୨୧ ।

ଦାକ୍ଷିଣ୍ୟଂ ସ୍ୱଜନେ ଦୟାପରଜନେ ଶାଠ୍ୟଂସଦା ଦୁର୍ଜନେ
ପ୍ରୀତିଃ ସାଧୁଜନେ ନୟୋନୃପଜନେ ବିଦ୍ୱଜ୍ଜନେ ଷ୍ୱାର୍ଜବମ୍
ଶୌର୍ୟ୍ୟଂ ଶତ୍ରୁଜନେ କ୍ଷମାଗୁରୁଜନେ ନାରୀଜନେ ଧୂର୍ତ୍ତତା
ୟେଚୈବଂ ପୁରୁଷାଃ କଳାସୁକୁଶଳାସ୍ତେଷ୍ୱେବ ଲୋକସ୍ଥିତିଃ । ୨୨ ।

ଜାଡ୍ୟଂ ଧିୟୋ ହରତି ସିଞ୍ଚତି ବାଚିସତ୍ୟଂ
ମାନୋନ୍ନତିଂ ଦିଶତି ପାପମପାକରୋତି
ଚେତଃ ପ୍ରସାଦୟତି ଦିକ୍ଷୁ ତନୋତି କୀର୍ତ୍ତିଂ
ସତ୍ସଂଗତିଃ କଥୟ କିଂ ନ କରୋତି ପୁଂସାମ୍ । ୨୩ ।

ଜୟନ୍ତି ତେ ସୁକୃତିନୋ ରସସିଦ୍ଧାଃ କବୀଶ୍ୱରାଃ
ନାସ୍ତି ୟେଷାଂ ୟଶଃକାୟେ ଜରାମରଣଜଭୟଂ । ୨୪ ।

ସୂନୁଃ ସଚ୍ଚରିତଃ ସତୀ ପ୍ରିୟତମା ସ୍ୱାମୀ ପ୍ରସାଦୋନ୍ମୁଖଃ
ସ୍ନିଗ୍ଧଂ ମିତ୍ରମବଞ୍ଚକଃ ପରିଜନୋ ନିଷ୍କ୍ଲେଶଲେଶଂ ମନଃ
ଆକାରୋ ରୁଚିରଃ ସ୍ଥିରଶ୍ଚ ବିଭବୋ ବିଦ୍ୟାବଦାତଂ ମୁଖଂ
ତୁଷ୍ଟେ ବିଷ୍ଟପହାରିଣୀଷ୍ଟଦହରୌ ସଂପ୍ରାପ୍ୟତେ ଦେହିନା । ୨୫ ।

ପ୍ରାଣାଘାତାନ୍ନିବୃତ୍ତିଃ ପରଧନହରଣେ ସଂଯମଃ ସତ୍ୟବାକ୍ୟଂ
କାଲେ ଶକ୍ତ୍ୟାପ୍ରଦାନଂ ଯୁବତିଜନକଥାମୂକଭାବଃ ପରେଷାମ୍
ତୃଷ୍ଣାସ୍ରୋତୋବିଭଙ୍ଗୋ ଗୁରୁଷୁ ଚ ବିନୟଃ ସର୍ବଭୂତାନୁକମ୍ପା
ସାମାନ୍ୟଃ ସର୍ବଶାସ୍ତ୍ରେଷ୍ୱନୁପହତବିଧିଃ ଶ୍ରେୟସାମେଷ ପନ୍ଥାଃ । ୨୬ ।

ପ୍ରାରଭ୍ୟତେ ନ ଖଲୁ ବିଘ୍ନଭୟେନ ନୀଚୈଃ
ପ୍ରାରଭ୍ୟ ବିଘ୍ନବିହତାଂ ବିରମନ୍ତି ମଧ୍ୟାଃ
ବିଘ୍ନୈଃ ପୁନଃପୁନରପି ପ୍ରତିହନ୍ୟମାନାଃ
ପ୍ରାରବ୍ଧମୁତ୍ତମଜନା ନ ପରିତ୍ୟଜନ୍ତି । ୨୭ ।

ଅସନ୍ତୋ ନାଭ୍ୟର୍ଥ୍ୟାଃ ସୁହୃଦପି ନ ଯାଚ୍ୟଃ କୃଶଧନଃ
ପ୍ରିୟା ନ୍ୟାଯ୍ୟା ବୃତ୍ତିର୍ମଲିନମସୁଭଙ୍ଗେପ୍ୟସୁକରମ୍
ବିପଦ୍ୟୁଚ୍ଚୈଃ ସ୍ଥେୟଂ ପଦମନୁବିଧେୟଂ ଚ ମହତାଂ
ସତାଂ କେନୋଦ୍ଦିଷ୍ଟଂ ବିଷମମସିଧାରାବ୍ରତମିଦମ୍ । ୨୮ ।

## ମାନଶୌର୍ଯ୍ୟ ପ୍ରଶଂସା

କ୍ଷୁତ୍କ୍ଷାମୋପି ଜରାକୃଶୋପି ଶିଥିଲପ୍ରାୟୋପି କଷ୍ଟାଂ ଦଶା-
ମାପନ୍ନୋପି ବିପନ୍ନଦୀଧିତିରପି ପ୍ରାଣେଷୁ ନଶ୍ୟତ୍ସ୍ୱପି
ମତ୍ତେଭେନ୍ଦ୍ରବିଭିନ୍ନକୁମ୍ଭକବଲଗ୍ରାସୈକବଦ୍ଧସ୍ପୃହଃ
କିଂ ଜୀର୍ଣ୍ଣଂ ତୃଣମତ୍ତି ମାନମହତାମଗ୍ରେସରଃ କେଶରୀ । ୨୯ ।

ସ୍ୱଲ୍ପଂ ସ୍ନାୟୁବସାବଶେଷମଲିନଂ ନିର୍ମାଂସମପ୍ୟସ୍ଥି ଗୋଃ
ଶ୍ୱା ଲବ୍ଧ୍ୱା ପରିତୋଷମେତି ନ ତୁ ତତ୍ତସ୍ୟ କ୍ଷୁଧାଶାନ୍ତୟେ
ସିଂହୋ ଜମ୍ବୁକମଙ୍କମାଗତମପି ତ୍ୟକ୍ତ୍ୱା ନିହନ୍ତି ଦ୍ୱିପଂ
ସର୍ବଂ କୃଚ୍ଛ୍ରଗତୋପି ବାଞ୍ଛତି ଜନଃ ସତ୍ତ୍ୱାନୁରୂପଂ ଫଲମ୍ । ୩୦ ।

ଲାଙ୍ଗୂଲଚାଳନମଧଶ୍ଚରଣାବପାତଂ
ଭୂମୌ ନିପତ୍ୟ ବଦନୋଦରଦର୍ଶନଞ୍ଚ
ଶ୍ୱା ପିଣ୍ଡଦସ୍ୟ କୁରୁତେ ଗଜପୁଙ୍ଗବସ୍ତୁ
ଧୀରଂ ବିଲୋକୟତି ଚାଟୁଶତୈଶ୍ଚ ଭୁଙ୍କ୍ତେ । ୩୧ ।

ସ ଜାତୋ ଯେନ ଜାତେନ ଯାତି ବଂଶଃ ସମୁନ୍ନତିମ୍
ପରିବର୍ତ୍ତିନି ସଂସାରେ ମୃତଃ କୋ ବା ନ ଜାୟତେ । ୩୨ ।

କୁସୁମସ୍ତବକସ୍ୟେବ ଦ୍ୱେ ଗତୀ ସ୍ତୋ ମନସ୍ୱିନାମ୍
ମୂର୍ଦ୍ଧ୍ନି ବା ସର୍ବଲୋକସ୍ୟ ଶୀର୍ଯ୍ୟେତ ବନେଽଥବା । ୩୩ ।

ସଂତ୍ୟନ୍ୟେଽପି ବୃହସ୍ପତି ପ୍ରଭୃତୟଃ ସମ୍ଭାବିତାଃ ପଞ୍ଚଷା—
ସ୍ତାନ୍ ପ୍ରତ୍ୟେଷ ବିଶେଷବିକ୍ରମରୁଚୀ ରାହୁର୍ନ ବୈରାୟତେ
ଦ୍ୱାବେବ ଗ୍ରସତେ ଦିନେଶ୍ୱରନିଶାପ୍ରାଣେଶ୍ୱରୌ ଭାସ୍ୱରୌ
ଭ୍ରାତଃ ପର୍ବଣି ପଶ୍ୟଦାନବପତିଃ ଶୀର୍ଷାବଶେଷୀକୃତଃ । ୩୪ ।

ବହତି ଭୁବନଶ୍ରେଣୀଂ ଶେଷଃ ଫଣାଫଲକସ୍ଥିତାଂ
କମଠପତିନା ମଧ୍ୟେପୃଷ୍ଠଂ ସଦା ସ ବିଧାର୍ଯ୍ୟତେ
ତମପି କୁରୁତେ କ୍ରୋଡାଧୀନଂ ପୟୋଧିରନାଦର
ଅହହ ମହତାଂ ନିଃସୀମାନଶ୍ଚରିତ୍ରବିଭୂତୟଃ । ୩୫ ।

ବରଂ ପକ୍ଷଚ୍ଛେଦଃ ସମଦମଘବନ୍ମୁକ୍ତକୁଲିଶ-
ପ୍ରହାରୈରୁଦ୍ଗଚ୍ଛଦ୍ବହଳଦହନୋଦ୍ଗାରଗୁରୁଭିଃ
ତୁଷାରାଦ୍ରେଃ ସୂନୋରହହ ପିତରି କ୍ଲେଶବିବଶେ
ନ ଚାସୌ ସଂପାତଃ ପୟସି ପୟସାଂ ପତ୍ୟୁରୁଚିତଃ । ୩୬ ।

ଯଦଚେତନୋଽପି ପାଦୈଃ ସ୍ପୃଷ୍ଟଃ ପ୍ରଜ୍ୱଳତି ସବିତୁରିନକାନ୍ତଃ
ତତ୍ତେଜସ୍ୱୀ ପୁରୁଷଃ ପରକୃତବିକୃତିଂ କଥଂ ସହତେ । ୩୭ ।

ସିଂହଃ ଶିଶୁରପି ନିପତତି ମଦମଳିନକପୋଳଭିତ୍ତିଷୁ ଗଜେଷୁ
ପ୍ରକୃତିରିୟଂ ସତ୍ତ୍ୱବତାଂ ନ ଖଳୁ ବୟସ୍ତେଜସୋ ହେତୁଃ । ୩୮ ।

ଜାତିର୍ୟାତୁ ରସାତଳଂ ଗୁଣଗଣସ୍ତସ୍ୟାପ୍ୟଧୋ ଗଚ୍ଛତା—
ଚ୍ଛୀଳଂ ଶୈଳତଟାତ୍ପତତ୍ୱଭିଜନଃ ସନ୍ଦହ୍ୟତାଂ ବହ୍ନିନା
ଶୌର୍ଯ୍ୟେ ବୈରିଣି ବଜ୍ରମାଶୁ ନିପତତ୍ୱର୍ଥୋ ସ୍ତୁ ନଃ କେବଲଂ
ଯେନୈକେନ ବିନା ଗୁଣାସ୍ତୃଣଲବପ୍ରାୟାଃ ସମସ୍ତାଇମେ । ୩୯ ।

ତାନୀନ୍ଦ୍ରିୟାଣି ସକଳାନି ତଦେବ କର୍ମ
ସା ବୁଦ୍ଧିରପ୍ରତିହତା ବଚନଂ ତଦେବ
ଅର୍ଥୋଷ୍ମଣା ବିରହିତଃ ପୁରୁଷଃ ସ ଏବ
ତ୍ୱନ୍ୟଃକ୍ଷଣେନ ଭବତୀତି ବିଚିତ୍ରମେତତ୍ । ୪୦ ।

ଯସ୍ୟାସ୍ତି ବିତ୍ତଂ ସ ନରଃ କୁଳୀନଃ
ସ ପଣ୍ଡିତଃ ସ ଶ୍ରୁତବାନ୍ ଗୁଣଜ୍ଞଃ
ସ ଏବ ବକ୍ତା ସ ଚ ଦର୍ଶନୀୟଃ
ସର୍ବେ ଗୁଣାଃ କାଞ୍ଚନମାଶ୍ରୟନ୍ତି । ୪୧ ।

ଦୌର୍ମନ୍ତ୍ୟାନ୍ନୃପତିର୍ବିନଶ୍ୟତି ଯତିଃ ସଙ୍ଗାତ୍ସୁତୋ ଲାଳନା—
ଦ୍ବିପ୍ରୋ ନଧ୍ୟୟନାତ୍କୁଳଂ କୁତନୟାଚ୍ଛୀଳଂ ଖଳୋପାସନାତ୍ ।
ହ୍ରୀର୍ମଦ୍ୟାଦନବେକ୍ଷଣାଦପି କୃଷିଃ ସ୍ନେହଃ ପ୍ରବାସାଶ୍ରୟାନ୍ମୈତ୍ରୀ
ଚ୍ଚାପ୍ରଣୟାତ୍ସମୃଦ୍ଧିରନୟାତ୍ତ୍ୟାଗାତ୍ପ୍ରମାଦାଦ୍ଧନମ୍ । ୪୨ ।

ଦାନଂ ଭୋଗୋ ନାଶସ୍ତିସ୍ରୋ ଗତୟୋ ଭବନ୍ତି ବିତ୍ତସ୍ୟ
ଯୋ ନ ଦଦାତି ନ ଭୁଂକ୍ତେ ତସ୍ୟ ତୃତୀୟା ଗତିର୍ଭବତି । ୪୩ ।

ମଣିଃଶାଣୋଲ୍ଲୀଢଃ ସମର ବିଜୟୀ ହେତିନିହତୋ
ମଦକ୍ଷୀଣୋ ନାଗଃ ଶରଦି ସରିତଃ ଶ୍ୟାନପୁଳିନାଃ
କଳାଶେଷଶ୍ଚନ୍ଦ୍ରଃ ସୁରତମୃଦିତା ବାଳଲଳନା
ତନିମ୍ନା ଶୋଭନ୍ତେ ଗଳିତବିଭବାଶ୍ଚାର୍ଥିଷୁ ନୃପାଃ । ୪୪ ।

ପରିକ୍ଷୀଣଃ କଶ୍ଚିତ୍ସ୍ପୃହୟତି ଯବାନାଂ ପ୍ରସୃତୟେ
ସପଶ୍ଚାତ୍ସମ୍ପୂର୍ଣ୍ଣଃ କଳୟତି ଧରଣୀଂ ତୃଣସମାମ୍
ଅତଶ୍ଚାନୈକାନ୍ତ୍ୟାଦ୍ଗୁରୁଲଘୁତୟାର୍ଥେଷୁ ଧନିନା—
ମବସ୍ଥା ବସ୍ତୂନି ପ୍ରଥୟତି ଚ ସଙ୍କୋଚୟତି । ୪୫ ।

ରାଜନ୍ଦୁଧୁକ୍ଷସି ଯଦି କ୍ଷିତିଧେନୁମେନାଂ
ତେନାଦ୍ୟ ବତ୍ସମିବ ଲୋକମମୁଂ ପୁଷାଣ
ତସ୍ମିଂଶ୍ଚ ସମ୍ୟଗନିଶଂ ପରିପୋଷ୍ୟମାଣେ
ନାନାଫଳୈଃ ଫଳତି କଳ୍ପଲତେବ ଭୂମିଃ । ୪୬ ।

ସତ୍ୟାନୃତା ଚ ପରୁଷା ପ୍ରିୟବାଦିନୀ ଚ
ହିଂସ୍ରା ଦୟାଳୁରପି ଚାର୍ଥପରା ବଦାନ୍ୟା
ନିତ୍ୟବ୍ୟୟା ପ୍ରଚୁରନିତ୍ୟଧନାଗମା ଚ
ବାରାଙ୍ଗନେବ ନୃପନୀତିରନେକରୂପା । ୪୭ ।

ବିଦ୍ୟାକୀର୍ତ୍ତିଃ ପାଳନଂ ବ୍ରାହ୍ମଣାନାଂ
ଦାନଂ ଭୋଗୋ ମିତ୍ରସଂରକ୍ଷଣଂ ଚ
ଯେଷାମେତେ ଷଡ୍ଗୁଣା ନ ପ୍ରବୃତ୍ତାଃ
କୋର୍ଥସ୍ତେଷାଂ ପାର୍ଥିବୋପାଶ୍ରୟେଣ । ୪୮ ।

ଯଦ୍ଧାତ୍ରା ନିଜ ଭାଲପଟ୍ଟଲିଖିତଂ ସ୍ତୋକଂ ମହଦ୍ବା ଧନଂ
ତତ୍ ପ୍ରାପ୍ନୋତି ମରୁସ୍ଥଳେପି ନିତରୌ ମେରୌ ତତୋ ନାଧିକମ୍
ତଦ୍ଧୀରୋଭବ ବିତ୍ତବତ୍ସୁ କୃପଣାବୃତ୍ତିଂ ବୃଥାମାକୃଥାଃ
କୂପେ ପଶ୍ୟ ପୟୋନିଧାବପି ଘଟୋ ଗୃହ୍ଣାତି ତୁଲ୍ୟଂ ଜଳମ୍ । ୪୯ ।

ତ୍ୱମେବ ଚାତକାଧାରୋଽସୀତି କେଷାଂ ନ ଗୋଚରଃ
କିମମ୍ଭୋଦବରାସ୍ମାକଂ କାର୍ପଣ୍ୟୋକ୍ତିଃ ପ୍ରତୀକ୍ଷତେ । ୫୦ ।

ରେରେ ଚାତକ ସାବଧାନ ମନସା ମିତ୍ରକ୍ଷଣଂ ଶ୍ରୂୟତା
ମମ୍ଭୋଦ ବହବୋ ବସନ୍ତି ଗଗନେ ସର୍ବେପି ନୈତାଦୃଶାଃ
କେଚିଦ୍ ବୃଷ୍ଟିଭିରାର୍ଦ୍ରୟନ୍ତି ବସୁଧାଂ ଗର୍ଜନ୍ତି କେଚିଦ୍ ବୃଥା
ଯଂ ଯଂ ପଶ୍ୟସି ତସ୍ୟ ତସ୍ୟ ପୁରତୋ ମାବ୍ରୂହିଦୀନଂ ବଚଃ । ୫୧ ।

## ଦୁର୍ଜନ ନିନ୍ଦା

ଅକରୁଣତ୍ୱମକାରଣବିଗ୍ରହଃ ପରଧନେ ପରଯୋଷିତି ଚ ସ୍ପୃହା
ସ୍ୱଜନବନ୍ଧୁଜନେଷ୍ୱସହିଷ୍ଣୁତା ପ୍ରକୃତିସିଦ୍ଧମିଦଂ ହି ଦୁରାତ୍ମନାମ୍ । ୫୨ ।

ଦୁର୍ଜନଃ ପରିହର୍ତ୍ତବ୍ୟୋ ବିଦ୍ୟୟା ଭୂଷିତୋଽପି ସନ୍
ମଣିନାଲଂକୃତଃ ସର୍ପଃ କିମସୌ ନ ଭୟଂକରଃ । ୫୩ ।

ଜାଡ୍ୟଂ ହ୍ରୀମତି ଗଣ୍ୟତେ ବ୍ରତରୁଚୌ ଦମ୍ଭଃ ଶୁଚୌ କୈତବଂ
ଶୂରେ ନିର୍ଘୃଣତା ମୁନୌ ବିମତିତା ଦୈନ୍ୟଂ ପ୍ରିୟାଲାପିନି
ତେଜସ୍ୱିନ୍ୟବଲିପ୍ତତା ମୁଖରତା ବକ୍ତର୍ୟଶକ୍ତିଃ ସ୍ଥିରେ
ତତ୍କୋ ନାମଗୁଣୋ ଭବେତ୍ସ ଗୁଣିନାଂୟୋ ଦୁର୍ଜନୈର୍ନାଙ୍କିତଃ । ୫୪ ।

ଲୋଭଶ୍ଚେଦଗୁଣେନ କିଂ ପିଶୁନତା ଯଦ୍ୟସ୍ତି କିଂ ପାତକୈଃ
ସତ୍ୟଂ ଚେତ୍ତପସା ଚ କିଂ ଶୁଚି ମନୋଯଦ୍ୟସ୍ତି ତୀର୍ଥେନ କିମ୍
ସୌଜନ୍ୟଂ ଯଦି କିଂ ଗୁଣୈଃ ସୁମହିମା ଯଦ୍ୟସ୍ତି କିଂ ମଣ୍ଡନୈଃ
ସଦ୍ବିଦ୍ୟା ଯଦି କିଂ ଧନୈରପଯଶୋ ଯଦ୍ୟସ୍ତି କିଂ ମୃତ୍ୟୁନା । ୫୫ ।

ଶଶୀ ଦିବସଧୂସରୋ ଗଳିତଯୌବନା କାମିନୀ
ସରୋ ବିଗତବାରିଜଂ ମୁଖମନକ୍ଷରଂ ସ୍ୱାକୃତେଃ
ପ୍ରଭୁର୍ଧନପରାୟଣଃ ସତତଦୁର୍ଗତଃ ସଜ୍ଜନୋ
ନୃପାଙ୍ଗଣଗତଃ ଖଲୋ ମନସି ସପ୍ତଶଲ୍ୟାନି ମେ । ୫୬ ।

ନ କଶ୍ଚିଚ୍ଚଣ୍ଡକୋପାନାମାତ୍ମୀୟୋ ନାମ ଭୂଭୁଜାମ୍
ହୋତାରମପି ଜୁହ୍ୱାନଂ ସ୍ପୃଷ୍ଟୋ ଦହତି ପାବକଃ । ୫୭ ।

ମୌନାନ୍ମୂକଃ ପ୍ରବଚନପଟୁର୍ବାତୁଳୋ ଜଲ୍ପକୋ ବା
ଧୃଷ୍ଟଃ ପାର୍ଶ୍ୱେ ବସତି ଚ ତଦା ଦୂରତଶ୍ଚାପ୍ରଗଲ୍ଭଃ
କ୍ଷାନ୍ତ୍ୟା ଭୀରୁର୍ଯଦି ନ ସହତେ ପ୍ରାୟଶୋ ନାଭିଜାତଃ
ସେବାଧର୍ମଃ ପରମଗହନୋ ଯୋଗିନାମପ୍ୟଗମ୍ୟଃ । ୫୮ ।

ଉଦ୍ଭାସିତାଖିଳଖଳସ୍ୟ ବିଶୃଙ୍ଖଳସ୍ୟ
ପ୍ରାଗ୍ଜାତ ବିସ୍ତୃତନିଜାଧମକର୍ମବୃତ୍ତେଃ
ଦୈବାଦବାପ୍ତବିଭବସ୍ୟ ଗୁଣଦ୍ୱିଷୋଽସ୍ୟ
ନୀଚସ୍ୟ ଗୋଚରଗତୈଃ ସୁଖମାସ୍ୟତେ କୈଃ । ୫୯ ।

ଆରମ୍ଭଗୁର୍ବୀଂ କ୍ଷୟିଣୀକ୍ରମେଣ ଲଘ୍ୱୀପୁରାବୃଦ୍ଧିମତୀଶ୍ଚ ପଶ୍ଚାତ୍
ଦିନସ୍ୟପୂର୍ବାର୍ଦ୍ଧ ପରାର୍ଦ୍ଧ ଭିନ୍ନାଚ୍ଛାୟେବ ମୈତ୍ରୀ ଖଳସଜ୍ଜନାନାମ୍ । ୬୦ ।

ମୃଗମୀନ ସଜ୍ଜନାନାଂ ତୃଣଜଳ ସନ୍ତୋଷବିହିତ ବୃତ୍ତିନାମ୍
ଲୁବ୍ଧକ ଧୀବରପିଶୁନା ନିଷ୍କାରଣବୈରିଣୋ ଜଗତି । ୬୧ ।

## ସୁଜନ ପ୍ରଶଂସା

ବାଞ୍ଛା ସଜ୍ଜନସଙ୍ଗମେ ପରଗୁଣେ ପ୍ରୀତିର୍ଗୁରୌ ନମ୍ରତା
ବିଦ୍ୟାୟାଂ ବ୍ୟସନଂ ସ୍ୱଯୋଷିତି ରତିର୍ଲୋକାପବାଦାଦ୍ଭୟମ୍
ଭକ୍ତିଃ ଶୂଳିନି ଶକ୍ତିରାତ୍ମଦମନେ ସଂସର୍ଗମୁକ୍ତିଃ ଖଳେ—
ଯେଷ୍ୱେତେ ନିବସନ୍ତି ନିର୍ମଳଗୁଣାସ୍ତେଭ୍ୟୋ ନରେଭ୍ୟୋ ନମଃ । ୬୨ ।

ବିପଦି ଧୈର୍ଯ୍ୟମଥାଭ୍ୟୁଦୟେ କ୍ଷମା, ସଦସି ବାକ୍ପଟୁତା ଯୁଧିବିକ୍ରମଃ
ଯଶସି ଚାଭିରୁଚିର୍ବ୍ୟସନଂ ଶ୍ରୁତୌ, ପ୍ରକୃତିସିଦ୍ଧମିଦଂହି ମହାତ୍ମନାମ୍ ।୬୩।

ପ୍ରଦାନଂ ପ୍ରଚ୍ଛନ୍ନଂ ଗୃହମୁପଗତେ ସମ୍ଭ୍ରମବିଧିଃ
ପ୍ରିୟଂ କୃତ୍ୱା ମୌନଂ ସଦସି କଥନଂ ଚାପ୍ୟୁପକୃତେଃ
ଅନୁତ୍ସେକୋ ଲକ୍ଷ୍ମ୍ୟାଂ ନିରଭିଭବସାରାଃ ପରକଥାଃ
ସତାଂ କେନୋଦ୍ଦିଷ୍ଟଂ ବିଷମମସିଧାରାବ୍ରତମିଦଂ । ୬୪ ।

କରେ ଶ୍ଳାଘ୍ୟସ୍ତ୍ୟାଗଃ ଶିରସି ଗୁରୁପାଦପ୍ରଣୟିତା
ମୁଖେ ସତ୍ୟାବାଣୀ ଜେତ୍ରୀ ଭୁଜୟୋର୍ବୀର୍ଯ୍ୟମତୁଲମ୍
ହୃଦି ସ୍ୱଚ୍ଛାବୃତ୍ତିଃ ଶ୍ରୁତମଧିଗତୈକବ୍ରତଫଳଂ
ବିନାପ୍ୟୈଶ୍ୱର୍ଯ୍ୟେଣ ପ୍ରକୃତିମହତାଂ ମଣ୍ଡନମିଦମ୍ । ୬୫ ।

ସମ୍ପତ୍ସୁ ମହତାଂ ଚିତ୍ତଂ ଭବତ୍ୟୁତ୍ପଳକୋମଳମ୍
ଆପତ୍ସୁ ଚ ମହାଶୈଳଶିଳା ସଂଘାତକର୍କଶମ୍ । ୬୬ ।

ସନ୍ତପ୍ତାୟସି ସଂସ୍ଥିତସ୍ୟ ପୟସୋ ନାମାପି ନ ଜ୍ଞାୟତେ
ମୁକ୍ତାକାରତୟା ତଦେବ ନଳିନୀପତ୍ରସ୍ଥିତଂ ରାଜତେ
ସ୍ୱାଧ୍ୟାଂ ସାଗରସୁକ୍ତିମଧ୍ୟପତିତଂ ତନ୍ମୌକ୍ତିକଂ ଜାୟତେ
ପ୍ରାୟେଣାଧମମଧ୍ୟମୋତ୍ତମଗୁଣାଃ ସଂସର୍ଗତୋ ଦେହିନାମ୍ । ୬୭ ।

ଯଃପ୍ରୀଣୟେତ୍ସୁଚରିତୈଃ ପିତରଂ ସପୁତ୍ରୋ
ଯଦ୍ଭର୍ତୁରେବ ହିତମିଚ୍ଛତି ତତ୍କଳତ୍ରମ୍
ତନ୍ମିତ୍ରମାପଦିସୁଖେ ଚ ସମକ୍ରିୟଂ ଯଦେ—
ତତ୍ତ୍ରୟଂ ଜଗତି ପୁଣ୍ୟକୃତୋ ଲଭନ୍ତେ । ୬୮ ।

ଏକୋଦେବଃ କେଶବୋ ବା ଶିବୋ ବା
ଏକଂ ମିତ୍ରଂ ଭୂପତି ର୍ବା ଯତିର୍ବା
ଏକୋବାସଃ ପତ୍ତନେ ବା ବନେ ବା
ଏକା ନାରୀ ସୁନ୍ଦରୀ ବା ଦରୀ ବା । ୬୯ ।

ନମ୍ରତ୍ୱେନୋନ୍ନମନ୍ତଃ ପରଗୁଣକଥନୈଃ ସ୍ୱାଙ୍ଗୁଣା ଖ୍ୟାପୟନ୍ତଃ
ସ୍ୱାର୍ଥନ୍ ସମ୍ପାଦୟନ୍ତୋ ବିତତପ୍ରିୟତରାରମ୍ଭୟତ୍ନାଃ ପରାର୍ଥେ
କ୍ଷାନ୍ତ୍ୟୈବାକ୍ଷେପରୁକ୍ଷାକ୍ଷରମୁଖରମୁଖାନ୍ଦୁର୍ଜନାନ୍ଦୂଷୟନ୍ତଃ
ସନ୍ତଃ ସାଶ୍ଚର୍ଯ୍ୟଚର୍ଯ୍ୟା ଜଗତି ବହୁମତାଃ କସ୍ୟ ନାଭ୍ୟର୍ଚ୍ଚନୀୟାଃ । ୭୦ ।

ଭବନ୍ତି ନମ୍ରାସ୍ତରବଃ ଫଳୋଦ୍ଗମୈ—
ର୍ନବାମ୍ବୁଭିର୍ଭୂରି ବିଲମ୍ବିନୋ ଘନାଃ ।
ଅନୁଦ୍ଧତାଃ ସତ୍ପୁରୁଷାଃ ସମୃଦ୍ଧିଭିଃ
ସ୍ୱଭାବ ଏବୈଷ ପରୋପକାରିଣାମ୍ । ୭୧ ।

ଶ୍ରୋତ୍ରଂ ଶ୍ରୁତେନୈବ ନ କୁଣ୍ଡଳେନ ଦାନେନପାଣିର୍ନତୁ କଂକଣେନ
ବିଭାତିକାୟଃ କରୁଣାପରାଣାଂ ପରୋପକାରୈର୍ନତୁ ଚନ୍ଦନେନ । ୭୨ ।

ପାପାନ୍ନିବାରୟତି ୟୋଜୟତେ ହିତାୟ
ଗୁହ୍ୟଂ ନ ଗୂହତି ଗୁଣାନ୍ ପ୍ରକଟୀକରୋତି
ଆପଦ୍‌ଗତଂ ଚ ନ ଜହାତି ଦଦାତି କାଲେ
ସନ୍ମିତ୍ରଲକ୍ଷଣମିଦଂ ପ୍ରବଦନ୍ତି ସନ୍ତଃ । ୭୩ ।

ପଦ୍ମାକରଂ ଦିନକରୋ ବିକଚୀକରୋତି
ଚନ୍ଦ୍ରୋ ବିକାଶୟତି କୈରବଚକ୍ରବାଲମ୍
ନାଭ୍ୟର୍ଥିତୋ ଜଲଧରୋଽପି ଜଲଂ ଦଦାତି
ସନ୍ତଃ ସ୍ୱୟଂ ପରହିତେ ସୁକୃତାଭିୟୋଗାଃ । ୭୪ ।

ଏକେ ସତ୍‌ପୁରୁଷାଃ ପରାର୍ଥଘଟକାଃ ସ୍ୱାର୍ଥଂ ପରିତ୍ୟଜ୍ୟ ୟେ,
ସାମାନ୍ୟାସ୍ତୁ ପରାର୍ଥମୁଦ୍ୟମଭୃତଃ ସ୍ୱାର୍ଥାବିରୋଧେନ ୟେ
ତେଽମୀ ମାନୁଷରାକ୍ଷସାଃ ପରହିତଂ ସ୍ୱାର୍ଥାୟ ନିଘ୍ନନ୍ତି ୟେ
ୟେ ନିଘ୍ନନ୍ତି ନିରର୍ଥକଂ ପରହିତଂ ତେ କେ ନ ଜାନୀମହେ । ୭୫ ।

କ୍ଷୀରେଣାତ୍ମଗତୋଦକାୟ ହି ଗୁଣାଦତ୍ତାଃ ପୁରାତେ-ଽଖିଲାଃ
କ୍ଷୀରେତାପମବେକ୍ଷ୍ୟ ତେନ ପୟସାସ୍ୱାତ୍ମା କୃଶାନୌ ହୁତଃ
ଗନ୍ତୁଂ ପାବକମୁନ୍ମନସ୍ତଦଭବଦ୍ଦୃଷ୍ଟ୍ୱା ତୁ ମିତ୍ରାପଦଂ
ୟୁକ୍ତଂ ତେନ ଜଲେନ ଶାମ୍ୟତି ସତାଂ ମୈତ୍ରୀ ପୁନସ୍ତ୍ୱୀଦୃଶୀ । ୭୬ ।

ଇତଃ ସ୍ୱପିତି କେଶବଃ କୁଲମିତସ୍ତଦୀୟଦ୍ୱିଷା—
ମିତଶ୍ଚ ଶରଣାର୍ଥିନଃ ଶିଖରିଣାଂ ଗଣାଃ ଶେରତେ
ଇତୋଽପି ବଡ଼ବାନଲଃ ସହ ସମସ୍ତସମ୍ବର୍ତ୍ତକୈ-
ରହୋ ବିତତମୂର୍ଜ୍ଜିତଂ ଭରସହାଂ ଚ ସିନ୍ଧୋର୍ବପୁଃ । ୭୭ ।

ତୃଷ୍ଣାଂ ଛିନ୍ଧି ଭଜ କ୍ଷମାଂ ଜହି ମଦଂ ପାପେ ରତିଂ ମାକୃଥାଃ
ସତ୍ୟଂ ବ୍ରୂହ୍ୟନୁୟାହି ସାଧୁପଦବୀଂ ସେବସ୍ୱ ବିଦ୍ୱଜ୍ଜନମ୍
ମାନ୍ୟାନ୍ମାନୟ ବିଦ୍ୱିଷୋଽପ୍ୟନୁନୟ ପ୍ରଖ୍ୟାପୟ ସ୍ୱାନ୍‌ଗୁଣା—
କୀର୍ତ୍ତିଂ ପାଲୟ ଦୁଃଖିତେ କୁରୁ ଦୟାମେତତ୍ସତାଂ ଲକ୍ଷଣମ୍ । ୭୮ ।

ମନସି ବଚସି କାୟେ ପୁଣ୍ୟପୀୟୂଷପୂର୍ଣ୍ଣା
ସ୍ତ୍ରିଭୁବନମୁପକାରଶ୍ରେଣିଭିଃ ପ୍ରୀଣୟନ୍ତଃ
ପରଗୁଣପରମାଣୂନ୍ ପର୍ବତୀକୃତ୍ୟ ନିତ୍ୟଂ
ନିଜହୃଦି ବିକସନ୍ତଃ ସନ୍ତି ସନ୍ତଃ କିୟନ୍ତଃ । ୭୯ ।

କିଂ ତେନ ହେମଗିରିଣା ରଜତାଦ୍ରିଣା ବା
ଯତ୍ରାଶ୍ରିତାଶ୍ଚ ତରବସ୍ତରବସ୍ତ ଏବ
ମନ୍ୟାମହେ ମଲୟମେବ ଯଦାଶ୍ରୟେଣ
କଂକୋଲ ନିମ୍ବକୁଟଜା ଅପି ଚନ୍ଦନାଃ ସ୍ୟୁଃ । ୮୦ ।

## ଧୈର୍ଯ୍ୟପ୍ରଶଂସା

ରତ୍ନୈର୍ମହାର୍ହୈସ୍ତୁତୁଷୁର୍ନ ଦେବା ନ ଭେଜିରେ ଭୀମବିଷେଣ ଭୀତିମ୍
ସୁଧାଂ ବିନା ନ ପ୍ରୟୟୁର୍ବିରାମଂ ନ ନିଶ୍ଚିତାର୍ଥାଦ୍ବିରମନ୍ତି ଧୀରାଃ । ୮୧ ।

କ୍ୱଚିଦ୍ଭୂମୌ ଶଯ୍ୟାସ୍ତେ କ୍ୱଚିଦପି ଚ ପର୍ଯ୍ୟଙ୍କଶୟନଂ
କ୍ୱଚିଚ୍ଛାକାହାରଃ କ୍ୱଚିଦପି ଚ ଶାଲ୍ୟୋଦନରୁଚିଃ
କ୍ୱଚିତ୍କନ୍ଥାଧାରୀ କ୍ୱଚିଦପି ଚ ଦିବ୍ୟାମ୍ବରଧରୋ
ମନସ୍ୱୀ କାର୍ଯ୍ୟାର୍ଥୀ ନ ଗଣୟତି ଦୁଃଖଂ ନ ଚ ସୁଖମ୍ । ୮୨ ।

ଐଶ୍ୱର୍ଯ୍ୟସ୍ୟ ବିଭୂଷଣଂ ସୁଜନତା ଶୌର୍ଯ୍ୟସ୍ୟ ବାକ୍ସଂୟମୋ
ଜ୍ଞାନସ୍ୟୋପଶମଃ ଶ୍ରୁତସ୍ୟ ବିନୟୋ ବିତ୍ତସ୍ୟ ପାତ୍ରେ ବ୍ୟୟଃ
ଅକ୍ରୋଧସ୍ତପସଃ କ୍ଷମା ପ୍ରଭବିତୁର୍ଧର୍ମସ୍ୟ ନିର୍ବ୍ୟାଜତା
ସର୍ବେଷାମପି ସର୍ବକାରଣମିଦଂ ଶୀଳଂ ପରଂ ଭୂଷଣମ୍ । ୮୩ ।

ନିନ୍ଦନ୍ତୁ ନୀତିନିପୁଣା ଯଦି ବା ସ୍ତୁବନ୍ତୁ
ଲକ୍ଷ୍ମୀଃ ସମାବିଶତୁ ଗଚ୍ଛତୁ ବା ଯଥେଷ୍ଟମ୍
ଅଦ୍ୟୈବ ବା ମରଣମସ୍ତୁ ଯୁଗାନ୍ତରେ ବା
ନ୍ୟାଯ୍ୟାତ୍ପଥଃ ପ୍ରବିଚଲନ୍ତି ପଦଂ ନ ଧୀରାଃ । ୮୪ ।

ଭଗ୍ନାଶସ୍ୟ କରଣ୍ଡପୀଡ଼ିତତନୋର୍ମ୍ଲାନେନ୍ଦ୍ରିୟସ୍ୟ କ୍ଷୁଧା
କୃତ୍ୱାଖୁର୍ବିବରଂ ସ୍ୱୟଂ ନିପତିତୋ ନକ୍ତଂ ମୁଖେ ଭୋଗିନଃ
ତୃପ୍ତସ୍ତତ୍ପିଶିତେନ ସତ୍ୱରମସୌ ତେନୈବ ଯାତଃ ପଥା
ଲୋକାଃ ପଶ୍ୟତ ଦୈବମେବ ହି ନୃଣାଂ ବୃଦ୍ଧୌ କ୍ଷୟେ କାରଣମ୍ । ୮୫ ।

ପାତିତୋଽପି କରାଘାତୈରୁତ୍ପତତ୍ୟେବ କନ୍ଦୁକଃ
ପ୍ରାୟେଣ ସାଧୁବୃତ୍ତାନାମସ୍ଥାୟିନ୍ୟୋ ବିପତ୍ତୟଃ । ୮୬ ।

ଆଲସ୍ୟଂ ହି ମନୁଷ୍ୟାଣାଂ ଶରୀରସ୍ଥୋ ମହାନ୍ ରିପୁଃ
ନାସ୍ତ୍ୟୁଦ୍ୟମସମୋ ବନ୍ଧୁର୍ଯଂ କୃତ୍ୱା ନାବସୀଦତି ।୮୭।

ଛିନ୍ନୋପି ରୋହତି ତରୁଃ କ୍ଷୀଣୋପ୍ୟୁପଚୀୟତେ ପୁନଶ୍ଚନ୍ଦ୍ରଃ
ଇତି ବିମୃଶନ୍ତଃ ସନ୍ତଃ ସନ୍ତପ୍ୟନ୍ତେ ନ ବିପ୍ଲୁତା ଲୋକେ ।୮୮।

## ଦୈବ ପ୍ରଶଂସା

ନେତା ଯସ୍ୟ ବୃହସ୍ପତିଃ ପ୍ରହରଣଂ ବଜ୍ରଂ ସୁରାଃ ସୈନିକାଃ
ସ୍ୱର୍ଗୋ ଦୁର୍ଗମନୁଗ୍ରହଃ କଲ ହରେରୈରାବତୋ ବାରୁଣଃ
ଇତ୍ୟୈଶ୍ୱର୍ଯ୍ୟବଳାନ୍ୱିତୋଽପି ବଳଭିଦ୍ଭଗ୍ନଃ ପରୈଃ ସଙ୍ଗରେ
ତଦ୍ୟୁକ୍ତଂ ବରମେବ ଦେବଶରଣଂ ଧିଗ୍ ଧିଗ୍ ବୃଥା ପୌରୁଷମ୍ ।୮୯।

କର୍ମାୟତ୍ତଂ ଫଳଂ ପୁଂସାଂ ବୁଦ୍ଧିଃ କର୍ମାନୁସାରିଣୀ
ତଥା ସୁଧିୟା ଭାବ୍ୟଂ ସୁବିଚାର୍ଯ୍ୟୈବ କୁର୍ବତା ।୯୦।

ଖଲ୍ୱାଟୋ ଦିବସେଶ୍ୱରସ୍ୟ କିରଣୈଃ ସଂତାପିତୋ ମସ୍ତକେ
ବାଞ୍ଛନ୍ଦେଶମନାତପଂ ବିଧିବଶାତ୍ତାଳସ୍ୟ ମୂଳଂ ଗତଃ
ତତ୍ରାପ୍ୟସ୍ୟ ମହାଫଳେନ ପତତା ଭଗ୍ନଂ ସଶବ୍ଦଂ ଶିରଃ
ପ୍ରାୟୋ ଗଚ୍ଛତି ଯତ୍ର ଭାଗ୍ୟରହିତସ୍ତତ୍ରୈବ ଯାନ୍ତ୍ୟାପଦଃ ।୯୧।

ଶଶିଦିବାକରୟୋର୍ଗ୍ରହପୀଡନଂ ଗଜଭୁଜଙ୍ଗମୟୋରପି ବନ୍ଧନମ୍
ମତିମତାଂ ଚ ବିଲୋକ୍ୟ ଦରିଦ୍ରତାଂ ବିଧିରହୋ ବଳବାନିତି ମେ ମତିଃ ।୯୨।

ସୃଜତି ତାବଦଶେଷଗୁଣାକରଂ ପୁରୁଷରତ୍ନମଳଂକରଣଂ ଭୁବଃ
ତଦପି ତତ୍କ୍ଷଣଭଙ୍ଗି କରୋତି ଚେଦହହ କଷ୍ଟମପଣ୍ଡିତତା ବିଧେଃ ।୯୩।

ପତ୍ରଂ ନୈବ ଯଦା କରୀର ବିଟପେ ଦୋଷୋ ବସନ୍ତସ୍ୟ କିଂ
ନୋଲୂକୋଽପ୍ୟବଲୋକତେ ଯଦି ଦିବା ସୂର୍ଯ୍ୟସ୍ୟ କିଂ ଦୂଷଣମ୍ ।
ଧାରା ନୈବ ପତନ୍ତି ଚାତକମୁଖେ ମେଘସ୍ୟ କିଂ ଦୂଷଣଂ
ଯତ୍ପୂର୍ବଂ ବିଧିନା ଲଲାଟ ଲିଖିତଂ ତନ୍ମାର୍ଜିତୁଂ କଃ କ୍ଷମଃ ।୯୪।

# କର୍ମ ପ୍ରଶଂସା

ନମସ୍ୟାମୋ ଦେବାନ୍ନନୁ ହତବିଧେସ୍ତେପି ବଶଗା
ବିଧିର୍ବନ୍ଦ୍ୟଃ ସୋପି ପ୍ରତିନିୟତ କର୍ମୈକ ଫଳଦଃ
ଫଳଂ କର୍ମାୟତ୍ତଂ କିମମରଗଣୈଃ କିଂ ଚ ବିଧିନା
ନମସ୍ତତ୍କର୍ମଭ୍ୟୋ ବିଧିରପି ନ ଯେଭ୍ୟଃ ପ୍ରଭବତି । ୯୫ ।

ବ୍ରହ୍ମା ଯେନ କୁଲାଲବନ୍ନିୟମିତୋ ବ୍ରହ୍ମାଣ୍ଡଭାଣ୍ଡୋଦରେ
ବିଷ୍ଣୁର୍ଯେନ ଦଶାବତାରଗହନେ କ୍ଷିପ୍ତୋ ମହାସଙ୍କଟେ
ରୁଦ୍ରୋ ଯେନ କପାଳପାଣିପୁଟକେ ଭିକ୍ଷାଟନଂ କାରିତଃ
ସୂର୍ଯ୍ୟୋ ଭ୍ରାମ୍ୟତି ନିତ୍ୟମେବ ଗଗନେ ତସ୍ମୈ ନମଃ କର୍ମଣେ । ୯୬ ।

ନୈବାକୃତିଃ ଫଳତି ନୈବ କୁଳଂ ନ ଶୀଳଂ
ବିଦ୍ୟାପି ନୈବ ନ ଚ ଯତ୍ନକୃତାପି ସେବା
ଭାଗ୍ୟାନି ପୂର୍ବତପସା ଖଲୁ ସଂଚିତାନି
କାଲେ ଫଳନ୍ତି ପୁରୁଷସ୍ୟ ଯଥୈବ ବୃକ୍ଷାଃ । ୯୭ ।

ବନେରଣେ ଶତ୍ରୁଜଳାଗ୍ନିମଧ୍ୟେ ମହାର୍ଣ୍ଣବେ ପର୍ବତମସ୍ତକେ ବା
ସୁପ୍ତଂପ୍ରମତ୍ତଂ ବିଷମସ୍ଥିତଂବା ରକ୍ଷନ୍ତିପୁଣ୍ୟାନି ପୁରାକୃତାନି । ୯୮ ।

ଯାସାଧୂଂଶ୍ଚ ଖଳାଙ୍କରୋତିବିଦୁଷୋ ମୂର୍ଖାନ୍ହିତାନ୍ଦ୍ୱେଷିଣଃ
ପ୍ରତ୍ୟକ୍ଷଂକୁରୁତେ ପରୋକ୍ଷମମୃତଂ ହାଲାହଳଂ ତତ୍କ୍ଷଣାତ୍
ତାମାରାଧୟ ସତ୍କ୍ରିୟାଂ ଭଗବତୀଂ ଭୋକ୍ତୁଂ ଫଳଂବାଂଛିତଂ
ହେ ସାଧୋ ବ୍ୟସନୈର୍ଗୁଣେଷୁ ବିପୁଲେଷ୍ୱାସ୍ଥାଂ ବୃଥାମା କୃଥାଃ ।୯୯।

ଗୁଣବଦଗୁଣବଦ୍ ବା କୁର୍ବତା କାର୍ଯ୍ୟମାଦୌ
ପରିଣତିରବଧାର୍ଯ୍ୟା ଯତ୍ନତଃ ପଣ୍ଡିତେନ
ଅତିରଭସକୃତାନାଂ କର୍ମଣାମାବିପତ୍ତେ—
ର୍ଭବତି ହୃଦୟଦାହୀ ଶଲ୍ୟତୁଲ୍ୟୋ ବିପାକଃ । ୧୦୦ ।

ସ୍ଥାଲ୍ୟାଂ ବୈଦୂର୍ଯ୍ୟମୟ୍ୟା ପଚତି ଚ ଲଶୁନଂ ଚନ୍ଦନୈରିନ୍ଧନୌଘୈଃ
ସୌବର୍ଣ୍ଣୈର୍ଲାଙ୍ଗଲାଗ୍ରୈର୍ବିଲିଖତି ବସୁଧାମର୍କମୂଳସ୍ୟ ହେତୋଃ
ଛିତ୍ତ୍ୱା କର୍ପୂରଖଣ୍ଡାନ୍ବୃତିମିହ କୁରୁତେ କୋଦ୍ରବାଣାଂ ସମନ୍ତା—
ପ୍ରାପ୍ୟେମାଂ କର୍ମଭୂମିଂ ନ ଚରତି ମନୁଜୋ ଯସ୍ତପୋ ମନ୍ଦଭାଗ୍ୟଃ । ୧୦୧ ।

ମଙ୍କୁଭୂମିଷ୍ୱପି ସ୍ଥାତୁ ମରୁଶିଖରଂ ଶତ୍ରୁଷ୍ଟଯ୍ୱଦ୍ଧାଦ୍ୱବେ
ବାଣିଜ୍ୟଂ କୃଷିସେବନାଦସକଳା ବଦ୍ୟାଃ କଳାଃ ଶିକ୍ଷତୁ
ଆକାଶଂ ବିପୁଳଂ ପ୍ରୟାତୁ ଖଗବଚ୍ଚୃତ୍ୱା ପ୍ରଯତ୍ନଂ ପରଂ
ନାଭାବ୍ୟଂ ଭବତୀହ କର୍ମବଶତୋ ଭାବ୍ୟସ୍ୟନାଶଃ କୁତଃ । ୧୦୨ ।

ଧାମଂବନଂ ଭବତି ତସ୍ୟପୁରଂ ପ୍ରଧାନଂ
ସର୍ବୋଜନଃ ସ୍ୱଜନତାମୁପୟାତି ତସ୍ୟ
କୃତ୍ସ୍ନା ଚ ଭୂର୍ଭବତି ସନ୍ନିଧିରତ୍ନପୂର୍ଣ୍ଣା
ଯସ୍ୟାସ୍ତି ପୂର୍ବସୁକୃତଂ ବିପୁଳଂ ନରସ୍ୟ । ୧୦୩ ।

କୋଲ୍ଲାଭୋ ଗୁଣିସଂଗମଃ କମସୁଖଂ ପ୍ରାଜ୍ଞେତରୈଃ ସଙ୍ଗତିଃ
କାହାନିଃ ସମୟଚ୍ୟୁତିର୍ନିପୁଣତା କା ଧର୍ମତତ୍ତ୍ୱେ ରତିଃ
କଃ ଶୂରୋ ବିଜିତେନ୍ଦ୍ରିୟଃ ପ୍ରିୟତମା କାନୁବ୍ରତା କଂ ଧନଂ
ବିଦ୍ୟା କଂ ସୁଖମପ୍ରବାସଗମନଂ ରାଜ୍ୟଂ କମାଜ୍ଞାଫଳମ୍ । ୧୦୪ ।

ମାଲତୀକୁସୁମସ୍ୟେବ ଦ୍ୱେ ଗତୀହ ମନସ୍ୱିନଃ
ମୂର୍ଦ୍ଧ୍ନି ବା ସର୍ବଲୋକସ୍ୟ ଶୀର୍ଯ୍ୟତେ ବନ ଏବ ବା । ୧୦୫ ।

ଅପ୍ରିୟବଚନଦରିଦ୍ରୈଃ ପ୍ରିୟବଚନାଢ୍ୟୈଃ ସ୍ୱଦାର ପରିତୁଷ୍ଟୈଃ
ପରପରିବାଦନିବୃତ୍ତୈଃ କ୍ୱଚିତ୍ କ୍ୱଚିନ୍ମଣ୍ଡିତା ବସୁଧା । ୧୦୬ ।

କଦର୍ଥିତସ୍ୟାପି ହି ଧୈର୍ଯ୍ୟବୃତ୍ତେ—
ର୍ନ ଶକ୍ୟତେ ଧୈର୍ଯ୍ୟଗୁଣଃ ପ୍ରମାଷ୍ଟୁମ୍
ଅଧୋମୁଖସ୍ୟାପି କୃତସ୍ୟ ବହ୍ନେ—
ର୍ନାଧଃ ଶିଖାଯାତି କଦାଚଦେବ । ୧୦୭ ।

କାନ୍ତାକଟାକ୍ଷବିଶିଖା ନ ଦହନ୍ତି ଯସ୍ୟ
ଚିତ୍ତଂ ନ ନିର୍ଦ୍ଦହତି କୋପକୃଶାନୁତାପଃ
କର୍ଷନ୍ତି ଭୂରିବିଷୟାଶ୍ଚ ନ ଲୋଭପାଶୈ—
ର୍ଲୋକତ୍ରୟଂ ଜୟତି କୃତ୍ସ୍ନମିଦଂ ସ ଧୀରଃ । ୧୦୮ ।

ଏକେନାପି ହି ଶୂରେଣ ପାଦାକ୍ରାନ୍ତଂ ମହୀତଳମ୍
କ୍ରିୟତେ ଭାସ୍କରେଣେବ ପରିସ୍ଫୁରିତ ତେଜସା । ୧୦୯ ।

ବହ୍ନିସ୍ତସ୍ୟ ଜଳାୟତେ ଜଳନିଧିଃ କୁଲ୍ୟାୟତେ ତତ୍କ୍ଷଣା—
ନ୍ମେରୁଃ ସ୍ୱଳ୍ପଶିଳାୟତେ ମୃଗପତିଃ ସଦ୍ୟଃ କୁରଙ୍ଗାୟତେ
ବ୍ୟାଳୋ ମାଲ୍ୟଗୁଣାୟତେ ବିଷରସଃ ପୀୟୂଷବର୍ଷାୟତେ
ଯସ୍ୟାଙ୍ଗେଽଖିଳଲୋକବଲ୍ଲଭତମଂ ଶୀଳଂ ସମୁନ୍ମୀଳତି । ୧୧୦ ।

ଲଜ୍ଜାଗୁଣୌଘ ଜନନୀଂ ଜନନୀମିବ ସ୍ୱା—
ମତ୍ୟନ୍ତଶୁଦ୍ଧହୃଦୟାମନୁବର୍ତ୍ତମାନାମ୍
ତେଜସ୍ୱିନଃ ସୁଖମସୂନପି ସନ୍ତ୍ୟଜନ୍ତି
ସତ୍ୟବ୍ରତ ବ୍ୟସନିନୋ ନ ପୁନଃ ପ୍ରତିଜ୍ଞାମ୍ । ୧୧୧ ।



# ଶ୍ରୀ ଜଗନ୍ନାଥ ମିଶ୍ର



ଜନ୍ମ : ୧୯୧୧ ଜୁନ୍ ଛ' ତାରିଖ

ସ୍ଥାନ : ଲାଠୂଳୀ ରଘୁନାଥପୁର ଶାସନ କୋଦଳା ତାଲୁକା (ଗଞ୍ଜାମ)

ପିତାଙ୍କ ନାମ ସ୍ୱର୍ଗୀୟ ଶ୍ରୀ ଗୋବିନ୍ଦ ମିଶ୍ର, ମାତା ଉମାଦେବୀ । ବାଲ୍ୟଶିକ୍ଷା ଓ କଲେଜ ଶିକ୍ଷା ପାରଳାଖେମୁଣ୍ଡିରେ । ପାରଳାରେ I. Sc. ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ରଖି ଉତ୍ତୀର୍ଣ୍ଣ ହେବା ପରେ ଓ୍ୱାଲ୍‌ଟେର୍‌ରେ B. Sc. (Hons) ଶେଷ ବର୍ଷ ୧୯୩୫ରେ ପଢ଼ା ଛାଡ଼ି ଦେଶ ଭ୍ରମଣ କରିଥିଲେ ଏବଂ ଉକ୍ତ ସମୟ ଭିତରେ ଅହମଦାବାଦ ସ୍ଥିତ ଗାନ୍ଧିଜୀଙ୍କ ଦ୍ୱାରା ପ୍ରତିଷ୍ଠିତ ଗୁଜରାଟ ବିଦ୍ୟାପୀଠରେ ବର୍ଷକ ପାଇଁ ଶିକ୍ଷକତା କରିଥିଲେ । ମହାତ୍ମାଗାନ୍ଧୀଙ୍କଦ୍ୱାରା ପ୍ରତିଷ୍ଠିତ 'ଅଖିଳ ଭାରତ ଚରଖା ସଂଘ'ରେ ୧୯୩୭ରେ ଯୋଗ ଦେଇ ସମଗ୍ର ଓଡ଼ିଶାର ଚରଖା ପ୍ରସାର ଓ ଖଦୀ ଉତ୍ପାଦନ କାର୍ଯ୍ୟର ଦାୟିତ୍ୱ ନେଇଥିଲେ । – ୧୯୪୨ ରେ ଇଂରେଜ ସରକାରଙ୍କ ଦ୍ୱାରା ଗିରଫ ହୋଇ ଖୋର୍ଦ୍ଧା, ପୁରୀ ଓ ବ୍ରହ୍ମପୁର ଜେଲରେ ଅଢ଼େଇ ବର୍ଷ ଅତିବାହିତ କଲେ । –୧୯୪୬ରେ କୋଦଳା ନିର୍ବାଚନମଣ୍ଡଳୀରୁ ଅପ୍ରତିଦ୍ୱନ୍ଦ୍ୱୀ ଭାବେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇ ୧୯୫୨ ପର୍ଯ୍ୟନ୍ତ ବିଧାନସଭାର ସଦସ୍ୟ ଥିଲେ । –୧୯୫୭ରେ ପୁନର୍ବାର ଓଡ଼ିଶା ସରକାରଙ୍କ ଖଦୀ ଆର୍ଗାନାଇଜର ରୂପେ ଦାୟିତ୍ୱ ଗ୍ରହଣ କଲେ । –ତଦବଧି ସେ ଆୟୁର୍ବେଦୀୟ ଔଷଧ ବ୍ୟବସାୟ ଓ ସାହିତ୍ୟସେବାରେ ଜୀବନର ଅବଶିଷ୍ଟ ସମୟ ଅତିବାହିତ କରଛନ୍ତି ।

## ଲେଖକଙ୍କର କେତେକ ସାହିତ୍ୟ କୃତି ଦିଆଗଲା :

ଶ୍ରୀମଦ୍ ଭଗବଦ୍ ଗୀତା ପଦ୍ୟାନୁବାଦ, ଗୀତା ମନ୍ଥନ, ଗୀତ ଗୋବିନ୍ଦ, କବିତାରଣ୍ୟ ଏ ସବୁ ପ୍ରକାଶିତ । ମେଘଦୂତ, ଭର୍ତ୍ତୃହରି, ଈଷାଉପନିଷଦ୍, କଠୋପନିଷଦ୍, ରାମଚରିତ ମାନସ ଇତ୍ୟାଦିର ପଦ୍ୟାନୁବାଦ ଅପ୍ରକାଶିତ ।